ଆଣ୍ଡରସନ୍‌ଙ୍କ

# ପରୀ କାହାଣୀ



ଶ୍ରୀ ଶରତ କୁମାର ମହାନ୍ତି

କିଶୋର ସାହିତ୍ୟ—୩

# ଆଣ୍ଡରସନଙ୍କ ପରୀ-କାହାଣୀ

ଲେଖକ :
ଶରତ କୁମାର ମହାନ୍ତି




ପ୍ରକାଶକ :
ଅଗ୍ରଦୂତ
କଟକ-୨

# ଆଣ୍ଡରସନ୍‌ଙ୍କ ପରୀ-କାହାଣୀ


ଲେଖକ :

**ଶରତ କୁମାର ମହାନ୍ତି**



ପ୍ରକାଶକ :

**ଅଗ୍ରଦୂତ**

ବାଙ୍କା ବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୦

ଦ୍ୱିତୀୟ ପ୍ରକାଶ : ୧୯୮୮

ତୃତୀୟ ପ୍ରକାଶ : ୧୯୯୬

ପ୍ରଚ୍ଛଦପଟ :

ଶ୍ରୀ ପ୍ରତାପ ପଟ୍ଟନାୟକ

ମୁଦ୍ରଣ :

**ରାଓ ପ୍ରିଣ୍ଟର୍ସ**

ବ୍ରାହ୍ମଣ ସାହି, କଟକ-୨

ମୂଲ୍ୟ : **ସାତ ଟଙ୍କା** ମାତ୍ର

# ଭୂମିକା

ଅନେକ ଦିନ ତଳେ ଜଣେ ରାଜା ଥିଲେ । ସୁନ୍ଦର ସୁନ୍ଦର ନୂଆ ପୋଷାକ ପିନ୍ଧିବାରେ ତାଙ୍କର ବଡ଼ ସଉକ୍ । ଦି'ଜଣ ଠକ କପଟରେ ଏ ରାଜାଙ୍କୁ ଅଦ୍ଭୁତ ପୋଷାକ ପିନ୍ଧାଇଲେ ଓ ରାଜା ରାସ୍ତାରେ ଲଙ୍ଗଳା ହୋଇ ବୁଲିଲେ, ସେ କାହାଣୀ ସମସ୍ତେ ଜାଣନ୍ତି । ଏ କାହାଣୀଟି ସାମାନ୍ୟ ଅଦଳବଦଳ ହୋଇ ଲୋକ ତୁଣ୍ଡରେ ବଞ୍ଚିଛି । କିନ୍ତୁ ମୂଳ କାହାଣୀର ସ୍ରଷ୍ଟା କିଏ ସେ ପ୍ରଶ୍ନ ପଚାରିଲେ ଅଧିକାଂଶ ଚୁପ୍ ରହିବେ । ଏହାର ସ୍ରଷ୍ଟା ହେଉଛନ୍ତି ହାନ୍‌ସ କ୍ରିଷ୍ଟିୟାନ୍ ଆଣ୍ଡରସନ୍ ।

ଆଣ୍ଡରସନ୍ (୧୮୦୫-୭୫) ଡେନ୍‌ମାର୍କର ଲୋକ । ଶୈଶବରୁ ସେ ପିତୃହୀନ । ଘୋର ଦାରିଦ୍ର୍ୟ ଓ ଦୁଃଖକଷ୍ଟ ଭିତରେ ତାଙ୍କର ଶୈଶବ ଓ କୈଶୋର ଅତିବାହିତ ହୋଇଥିଲା । ସେ ସ୍କୁଲ କଲେଜରେ ପାଠ ପଢିବାର ସୁଯୋଗ ପା'ଇ ନ ଥିଲେ । ଥିଏଟରରେ ମିଶି ଦିନାକେତେ ସେ ନାଚ, ଗୀତ ଓ ଅଭିନୟରେ ମାତିଲେ ; କିନ୍ତୁ ଏ ସବୁରୁ ତାଙ୍କୁ ସନ୍ତୋଷ ମିଳିଲା ନାହିଁ । ଆଣ୍ଡରସନ ଲେଖାଲେଖି ଆଡକୁ ମନ ଦେଲେ ।

ଖୁବ୍ ଶୀଘ୍ର ଜଣେ ସୁଲେଖକ ଭାବେ ଆଣ୍ଡରସନ୍‌ଙ୍କ ଖ୍ୟାତି ହେଲା । ସେ ଅନ୍ୟାନ୍ୟ ଲେଖା ଲେଖିଥିଲେ ମଧ୍ୟ ତାଙ୍କର କାହାଣୀଗୁଡ଼ିକ ପଢ଼ି ଲୋକେ ମୁଗ୍ଧ ହେଲେ । ତାଙ୍କର ଯଶ ଦେଶର ସୀମା ଅତିକ୍ରମ କଲା ।

ଆଣ୍ଡରସନ୍‌ଙ୍କ ପରୀ-କାହାଣୀ ସବୁ (Fairy Tales) ସାରା ବିଶ୍ୱରେ ସୁପରିଚିତ । ତାଙ୍କ ଜୀବନକାଳରେ ସେ 'ଶିଶୁର ବନ୍ଧୁ' ନାମ ଅର୍ଜନ କରିଥିଲେ । ତେବେ ତାଙ୍କର ପରୀ-କାହାଣୀଗୁଡ଼ିକ କେବଳ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ପୁଣି କେବଳ ଶିଶୁଙ୍କ ପାଇଁ ଉଦ୍ଦିଷ୍ଟ ସୁନ୍ଦର ସୁନ୍ଦର କଣ୍ଢେଇ, ଖେଳଣା ଓ ହରଭଙ୍ଗୀ ଛବିବହି ପ୍ରତି କ'ଣ ବୟସ୍କମାନଙ୍କର କମ୍ ଆକର୍ଷଣ ! ଶିଶୁମାନେ ସହଜରେ ପରୀ ରାଇଜକୁ ବୁଲିଯାଆନ୍ତି । ପରୀ ରାଇଜ ସେମାନଙ୍କର ଅସଲ ବାସସ୍ଥଳୀ । ମାତ୍ର ସେ ରାଇଜକୁ ଆଦୌ ପଶି ପାରୁ ନ ଥିବା, ତାକୁ ମିଥ୍ୟା ଓ କାଳ୍ପନିକ କହି ହସରେ ଉଡ଼େଇ ଦେଉଥିବା ବୟସ୍କ ମଣିଷଟିଏ କେଡ଼େ ଭୟଙ୍କର !

ଏ ବହିରେ ଆଣ୍ଡରସନ୍‌ଙ୍କର ଦଶୋଟି ବଛିଷ୍ଟ କାହାଣୀର ଭାବାନୁବାଦ ରହିଛି । ଆଶାକରେ, ବହିଟି ପିଲାଙ୍କଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତଙ୍କ ଦ୍ୱାରା ଆଦୃତ ହେବ ।

# ସୂଚୀ





# ବୁଢ଼ା ଓକ୍‌ର ଶେଷସ୍ୱପ୍ନ

ସମୁଦ୍ର କୂଳରେ ଗୋଟିଏ ଉଚ୍ଚା କୁଦ ଉପରେ ବୁଢ଼ା ଓକ୍ ଗଛଟିଏ ଥାଏ । ତାକୁ ଠିକ୍ ତିନିଶହ ପଅଁଷଠି ବର୍ଷ ହେବ । ମାତ୍ର ଗଛର ଏତେଗୁଡ଼ା ବୟସ ଜାଣ ମଣିଷର ତିନିଶହ ପଅଁଷଠି ଦିନ ସହିତ



ସମାନ । ଆମେ ଦିନରେ ଚେଇଁ ; ରାତିରେ ଶୋଉ । ଗଛ କଥା କିନ୍ତୁ ଅଲଗା । ସେ ବର୍ଷକର ତିନି ଋତୁ ଚେଇଁଥାଏ, ତିନି ଋତୁ ଶୁଏ । ଶୀତ ନ ଆସିବା ପର୍ଯ୍ୟନ୍ତ ଗଛକୁ ନିଦ ଲାଗେନା । ବସନ୍ତ, ଗ୍ରୀଷ୍ମ ଓ ବର୍ଷା ଋତୁ ତିନୋଟି ଗଛର ଦିନ, ବାକି ତିନି ଋତୁ ରାତି ।

ଖରାଦିନେ ନାନା ଜାତିର ମାଛି ଓକ୍ ଗଛ ପାଖକୁ ଆସନ୍ତି । ଦିନେ ଗୋଟିଏ ମାଛି ଗୁଣୁଗୁଣୁ ହୋଇ ମନ ଖୁସିରେ ଏ ଡାଳରୁ ସେ ଡାଳ ଉଡ଼ି ବୁଲୁଥାଏ । ତା ଜାତିର ମାଛିଙ୍କର ଆୟୁଷ ମାତ୍ର ଦିନଟିଏ । ମାଛି ଦେଖି ଗଛ ମନେ ମନେ ଭାବିଲା, "ଆହା ! ବିଚରା ! ଦିନକପାଇଁ ପୃଥିବୀକୁ ଆସିଛି । ତାକୁ କେଡ଼େ ଦୁଃଖ ଲାଗୁ ନ ଥିବ ?"

"ଦେଖୁଛ ତ", ଗଛ ତା'ର କଥା ଭାବୁଥିଲାବେଳେ ଗଛକୁ ଶୁଣେଇ ମାଛି କହିଲା, "ପୃଥିବୀଟା କେଡ଼େ ସୁନ୍ଦର ଆଉ ଚମତ୍କାର । ଏ ସବୁ ଦେଖି ମତେ ବଡ଼ ଆନନ୍ଦ ଲାଗୁଛି ।"

"କିନ୍ତୁ ଦିନଟିଏ ତ । ତା ପରେ ସବୁ ଶେଷ ।"

"ଶେଷ ?" ମାଛି ଦୋହରେଇ ପଚାରିଲା, "ମାନେ ? ତମର ସବୁ ଶେଷ ହୋଇ ଗଲେଣି କି ।"

"ନା, ମୁଁ ଆଉ ପ୍ରାୟ ହଜାରେ ଦିନ ବଞ୍ଚିବି । ତମ ଜୀବନ କାଳର ହଜାର ଗୁଣ ।"

"ମୁଁ ତମ କଥା ବୁଝି ପାରୁନାହିଁ । ମୋଠାରୁ ତମର ହଜାର ଗୁଣ ଅଧିକ ଦିନ ଥାଇପାରେ । କିନ୍ତୁ ମୋର ଆୟୁଷ କିଛି କମ୍ ନୁହେଁ । ମୁଁ ପୃଥିବୀରେ ହଜାରେ ମୁହୂର୍ତ୍ତ ରହିବି । ହଜାରେ ମୁହୂର୍ତ୍ତ ଆନନ୍ଦରେ ବିତାଇ ପାରିବି । ବଞ୍ଚିବାପାଇଁ ଆମ ଦୁହିଁଙ୍କ ହାତରେ ସମାନ ସମୟ । କେବଳ ଆମେ ତାକୁ ଭିନ୍ନ ଭିନ୍ନ ମାପକାଠିରେ ମାପୁଛୁ ।"

ଏତିକି କହି ମାଛି ଆନନ୍ଦରେ ଉଡ଼ିଗଲା । ମନଖୁସିରେ ନାଚି ଗାଇ ଏଣେତେଣେ ବୁଲିଲା । ସୂର୍ଯ୍ୟ ପଶ୍ଚିମରେ ଢଳିଲାବେଳକୁ ତା'ର ଟିକି ଡେଣାଦୁଇଟି ଥକି ପଡ଼ିଥିଲା । ଅବଶ ଭାବେ ସେ ଘାସର ନରମ ଗାଲିଚା ଉପରେ ବସିଗଲା । ତା'ର ଆଖିପତା ବୁଜିହୋଇ ଆସୁଥାଏ । ହଲଚଲ ନ ହୋଇ ସେ ଶୋଇ ପଡ଼ିଲା । ସେଇ ତା'ର ଚିରନିଦ୍ରା । ମାଛିଟି ମରିଗଲା ।

'ବଚଗ !' ଓକ୍ ଗଛ ମନକୁମନ କହିଲା, "ଜୀବନ ପୁଣି ଏତେ ସୁନ୍ଦର !"

ଏ ଘଟଣା ଥରେ ନୁହେଁ, ପ୍ରତିବର୍ଷ ଘଟେ । ସବୁଥର ଖରାଦିନେ ସେଇ ଜାତିର ମାଛିଟିଏ ଆସେ । ଗୁଣୁଗୁଣୁ ହୋଇ ଓକ୍ ଗଛର ଶାଖା ପ୍ରଶାଖାରେ ଘୂରିବୁଲେ । ଗଛ ପ୍ରତିଥର ମାଛିକୁ ସେଇ ଏକା ପ୍ରଶ୍ନ ପଚାରେ, ଆଉ ସେଇ ଏକା ଉତ୍ତର ପାଏ । କେତେବର୍ଷ ଧରି ମାଛିମାନେ ଗଛକୁ ଗୋଟିଏ ଉତ୍ତର ଦେଇ ଆସୁଛନ୍ତି କିଏ ତା'ର ହିସାବ ରଖିଛି ?

ପୁଣି ଥରେ ଶୀତ ଆସିଲା । ଗଛକୁ ନିଦ ଲାଗିଲା । ବଡ଼ଦିନ ପର୍ବ ସମୟ । ସେ ଗୋଟିଏ ସ୍ୱପ୍ନ ଦେଖିଲା । ପ୍ରତିବର୍ଷ ତା ଜୀବନରେ ଯାହା ଯାହା ଘଟିଥିଲା, ଗୋଟିକ ପରେ ଗୋଟିଏ ସେ ସବୁ ଛବି ପରି ତା' ସାମନାରେ ଭାସିଗଲା । ଗଛର ମନେହେଲା, ସତେ ଯେପରି ତା'ର ପ୍ରତିଟି ପତ୍ର, କାଣ୍ଡ ଓ ଚେର ଦେଇ ନୂଆ ଜୀବନ ସଞ୍ଚରି ଯାଉଛି । ସେ ଅପୂର୍ବ ଅନୁଭୂତିରେ ଓକ୍‌ର ସର୍ବାଙ୍ଗ ପୁଲକିତ ହେଲା । ତାକୁ ଲାଗିଲା, ତା'ର ବଳ ବଢ଼ି ଯାଉଛି । ଝଙ୍କାଳିଆ ହୋଇ ସେ ଉପରକୁ ଉଠୁଛି । ଊର୍ଦ୍ଧ୍ୱ ଦିଗରେ ଆହୁରି ବଢ଼ିବାପାଇଁ ଗଛ ଭିତରେ ଉନ୍ମାଦନା ଖେଳିଗଲା । ବଢ଼ି ବଢ଼ି ସେ ସୂର୍ଯ୍ୟଙ୍କୁ ଛୁଇଁ ପାରନ୍ତା କି ? ଏହିପରି ଏକ ଉଲ୍ଲସିତ ବ୍ୟାକୁଳତା ତା ଭିତରେ ଜାଗ୍ରତ ହେଲା ।

ଆଗ ଡାଳଗୁଡ଼ିକ ବାଦଲକୁ ଭେଦିଗଲେ । ଓକ୍‌ର ଶାଖା ତଳେ ମେଘମାନେ ହଂସଙ୍କ ପରି ଚହଲୁଥାଆନ୍ତି । ଦିନ ସମୟରେ ମଧ୍ୟ ସେ ଚକ୍ ଚକ୍ ଉଜ୍ଜ୍ୱଳ ତାରାମାନଙ୍କୁ ଦେଖି ପାରିଲା । ତା ପାଇଁ ଏ ସବୁ କି ଅପୂର୍ବ ଉଲ୍ଲାସର ମୁହୂର୍ତ୍ତ ! ଆନନ୍ଦରେ ଓକ୍‌ର ପ୍ରାଣ ପୂରିଯାଉଥାଏ । ପୁଣି ଏହା ସହିତ ଏକ ବ୍ୟାକୁଳ ସ୍ପୃହା ସେ ଅନୁଭବ କରୁଥାଏ । ତା ତଳେ ଥିବା ଗ୍ଛୋଟିଆ ଫୁଲଗଛ ଓ ବୁଦାମାନେ, ଅନ୍ୟାନ୍ୟ ଗଛମାନେ, ତା'ରି ପରି ଆକାଶମୁଖୀ ହୋଇ ବଢ଼ନ୍ତେ ନାହିଁ ? ତା ହେଲେ ସେମାନେ ମଧ୍ୟ ଆକାଶର ଐଶ୍ୱର୍ଯ୍ୟ ଦେଖି ପରମ ଆନନ୍ଦ ପାଆନ୍ତେ ।

ସତକୁ ସତ ଓକ୍‌ର ଏ କାମନା ପୂରଣ ହେଲା । ସେ ଦେଖିଲା ତା'ର ଆଖପାଖରେ ଓ ତଳେ ଥିବା ଗଛମାନେ ବଢ଼ୁଛନ୍ତି । ଏପରିକି

ବୃକ୍ଷମାନେ ମାଟିରୁ ଉପୁଜି ଆକାଶ ଆଡ଼କୁ ଛୁଟିଛନ୍ତି । ବଢ଼ନ୍ତା ଚହଙ୍କ ଡାଳରେ ବସିଥିବା ଚଢ଼େଇମାନେ ମଧ୍ୟ ଉଚ୍ଚରୁ ଉଚ୍ଚକୁ ଉଠୁଛନ୍ତି । ଚଢ଼େଇଙ୍କ କାକଳି କି ମିଠା !

ଧାନବୁଦା ଉପରେ ଗୋଟିଏ ଝିଣ୍ଟିକା ବସି ଆରାମରେ ଡେଣା ହୋଲୁଥାଏ । ଓକ୍ ତାକୁ ପଚାରନ୍ତି, "ଶାଳକଇଁ କୁଆଡ଼େ ଗଲା ? ଆଉ କେଇ ବାଇଗଣିଆ ଫୁଲଗଛ ? ବସନ୍ତ କୁସୁମ ମଧ୍ୟ ଦିଶୁନ ?"



"ଆମେ ସମସ୍ତେ ଏଇଠି ଅଛୁ ।" ସେମାନଙ୍କର ମିଳିତ ସ୍ୱର ଶୁଭିଲା ।

"କିନ୍ତୁ ଯେଉଁଦିନେ ଯାହାର ଏତେ ସୁନ୍ଦରିଆ ଫୁଲ ଫୁଟେ ସେ ଗଛ କାହିଁ ? ସେ ନାଲି ଫୁଲିଆ କେଉଁଠି ରହିଲା ? ଯେଉଁ ଆପେଲ ଗଛର ଫଳଫୁଲରେ ପ୍ରତିବର୍ଷ ଏ ବଗିଚା ଶୋଭାବନ୍ତ ହୁଏ ସେ କ'ଣ ଆସିନାହିଁ ?"

"ଆମେ ମଧ୍ୟ ଏଇଠି ଅଛୁ ।" ଅନେକ ଉଚ୍ଚରୁ ସେମାନଙ୍କର ସ୍ୱର ଶୁଭିଲା ।

ଓକ୍‌ର ହୃଦୟ ଗମ୍ଭୀର ପ୍ରଶାନ୍ତିରେ ଭରିଗଲା ।

ଊର୍ଦ୍ଧ୍ୱ ଦିଗରେ ତା'ର ଗତି ତଥାପି ବନ୍ଦ ହୋଇ ନ ଥାଏ । ଓକ୍ ଅନୁଭବ କଲା, ତା'ର ଚେର ସବୁ ହୁଗୁଳା ମାଟିରୁ ଉପୁଡ଼ି ଯାଉଛନ୍ତି ।

"ଖୁବ୍ ଭଲ ହେଲା ।" ଓକ୍ ଭାବିଲା, "ଏଣିକି ମୁଁ ବନ୍ଧନ ମୁକ୍ତ । ଏହାପରେ ମୁଁ ପୃଥ୍ୱୀ ଆଲୋକ ପର୍ଯ୍ୟନ୍ତ ଉଡ଼ିଯାଇ ପାରିବ । ପୁଣି ମୁଁ ଯେଉଁମାନଙ୍କୁ ଭଲପାଏ ସେମାନେ ସମସ୍ତେ ମୋ ସାଙ୍ଗରେ ଅଛନ୍ତି ।"

ବୁଢ଼ା ଓକ୍ ଏହିପରି ସ୍ୱପ୍ନ ଦେଖୁଥାଏ । ସେ ସ୍ୱପ୍ନବିଭୋର ଥିବା-ବେଳେ ଗୋଟାଏ ଝଡ଼ ଉଠିଲା । ବଡ଼ଦିନ ରାତିରେ ପ୍ରବଳ ବତାସରେ ଓକ୍ ଗଛଟି ଉପୁଡ଼ି ପଡ଼ିଲା । ତା'ର ତିନିଶହ ପଅଁଷଠି ବର୍ଷ ମାତ୍ରର ଗୋଟିଏ ଦିନପରି ସରିଗଲା । ବଡ଼ଦିନ ପ୍ରଭାତରେ ସୂର୍ଯ୍ୟ ଉଇଁଲାବେଳକୁ ଝଡ଼ ଥମି ଯାଇଥାଏ ।

ସକାଳୁ ନାବିକମାନେ ଦେଖିଲେ, ବିରାଟ ଓକ୍ ଗଛଟି ଉପୁଡ଼ି ପଡ଼ିଛି । କେତେକାଳର ପୁରୁଣା ଗଛର ଏ ଦଶା ଦେଖି ସେମାନେ ଖୁବ୍ ଦୁଃଖକଲେ । ଏଇ ଗଛଟି ଥିଲା ସେମାନଙ୍କର ଦିଗବାରେଣୀ ।



# ମତ୍ସ୍ୟକନ୍ୟା

ସାଗର ରାଜାଙ୍କର ରାଣୀ ଅନେକ ଦିନରୁ ମରି ଯାଇଥାନ୍ତି । ତେଣୁ ସମୁଦ୍ର ଭିତରେ ତାଙ୍କର ବିରାଟ ଉଆସ ଚଳାଇବାର ଦାୟିତ୍ୱ ବୁଢ଼ୀ ରାଜମାତାଙ୍କ ଉପରେ ନ୍ୟସ୍ତ ଥାଏ । ସାଗର ରାଜାଙ୍କର ଛଅଜଣ ସୁନ୍ଦରୀ ଝିଅ । ସବା ସାନଟିଏ ଅପୂର୍ବ ସୁନ୍ଦରୀ । ତା'ର ଦେହ ଗୋଲାପ ପରି କଅଁଳ, ଆଖି ଦୁଇଟି ଦରିଆ ମଝିର ଗଭୀର ଜଳପରି ନୀଳ; କିନ୍ତୁ ସେ ତ ମତ୍ସ୍ୟକନ୍ୟା । ଅନ୍ୟ ଭଉଣୀଙ୍କ ପରି ତା'ର ମଧ୍ୟ ଗୋଡ଼ ନ ଥାଏ । ତା ଗୋଡ଼ ଆଡ଼ଟି ମାଛଙ୍କ ପରି ।



ମତ୍ସ୍ୟକନ୍ୟାକୁ ପନ୍ଦର ପୂରିଗଲା ଦିନଠାରୁ ତାକୁ ଆଉ ପିଲାଳିଆଙ୍କ କିଛି କେବେ ଆକର୍ଷ କଲେ ନାହିଁ । ତେଣୁ ଉତ୍ସାହରେ ସେ ପାଣି ଉପରକୁ ଉଠିଆସି ସ୍ଥଳଭାଗ ଓ ଆକାଶକୁ ଦେଖେ । ଦିନକର କଥା । ସୂର୍ଯ୍ୟାସ୍ତ ସମୟ । ପାଣିରୁ ମୁଣ୍ଡ ଉଠେଇ ମତ୍ସ୍ୟକନ୍ୟା ଚାରିଆଡ଼କୁ ଚାହିଁ ଦେଖୁଥାଏ । ଆକାଶ ନିର୍ମଳ । ସମୁଦ୍ର ଶାନ୍ତ । ମୃଦୁ ପବନ ବହୁଥାଏ । ଗୋଟିଏ ବଡ଼ ଜାହାଜ ସମୁଦ୍ରରେ ସ୍ଥିର ଭାବେ ଭାସୁଥାଏ । ପବନ ଭଲଭାବେ ନ ବହିଲେ ଜାହାଜ ବା ଚଳିବ କିପରି ?

କିଛି କାମ ନ ଥିବାରୁ ନାବିକମାନେ ଆରାମରେ ଡେକ୍ ଉପରେ ବସିଥାନ୍ତି । ଜାହାଜ ଭିତରୁ ଗୀତବାଜଣା ଶୁଭୁଥାଏ । ସଞ୍ଜ ହୋଇଯିବାରୁ

ଜାହାଜରେ ଶତାଧିକ ରଙ୍ଗ ବେରଙ୍ଗର ଲଣ୍ଠନ ଜଳିଲା । ମତ୍ସ୍ୟକନ୍ୟା କୌତୂହଳରେ ଜାହାଜ ପାଖକୁ ପହଁଚି ଗଲା । ସମୁଦ୍ର ଡେଉଁରେ ଜାହାଜ ଚହଲି ଗଲାବେଳେ ମତ୍ସ୍ୟକନ୍ୟାକୁ ଜାହାଜ ଭିତର ଟିକିଏ ଦିଶିଯାଏ । ଜାହାଜର ସ୍ୱଚ୍ଛ କାଚଝରକା ଭେଦି ସୁନ୍ଦର ପୋଷାକରେ ସଜ୍ଜିତ ଅନେକ-ଗୁଡ଼ିଏ ମଣିଷଙ୍କୁ ସେ ଦେଖି ପାରୁଥିଲା । ସେମାନଙ୍କ ମେଳରେ ଜଣେ ଦିବ୍ୟସୁନ୍ଦର ରାଜକୁମାର ବସିଥାନ୍ତି । ତାଙ୍କର କଳାଡ଼ୋଳା ଦୁଇଟି ବଡ଼ ମନମତାଣିଆ ।

ସେଦିନ ରାଜକୁମାରଙ୍କ ଜନ୍ମଦିନ । ତାଙ୍କୁ ଷୋହଳ ପୂରିଗଲା । ଏହି ଉତ୍ସବ ଉପଲକ୍ଷେ ସମସ୍ତେ ହସଖୁସିରେ ମାତିଥାନ୍ତି । ନାବିକମାନଙ୍କର ଫୁର୍ତ୍ତି ଦେଖେ କିଏ ? ଡେକ୍ ଉପରେ ସେମାନେ ଗୀତ ଗାଇ ନାଚୁଥାନ୍ତି । ରାଜକୁମାର ତାଙ୍କର ପ୍ରକୋଷ୍ଠ ଭିତରୁ ବାହାରି ଆସିଲେ । ସେ ଆସିବା ମାତ୍ରେ ଶହ ଶହ ହାଉଇ ଆକାଶକୁ ଉଠିଲା । ଆଲୁଅରେ ଚତୁର୍ଦ୍ଦିଗ ଝଲସିଗଲା । ମତ୍ସ୍ୟକନ୍ୟା ତ ଏପରି ଦୃଶ୍ୟ କେବେ ଦେଖି ନ ଥିଲା । ଡରିଯାଇ ପାଣି ଭିତରେ ବୁଡ଼ିଗଲା । ପୁଣି ମୁଣ୍ଡ ଟେକି ଯାହା ଦେଖିଲା ତା'ର ମନେହେଲା ସତେକି ଆକାଶର ସବୁ ତାରା ତା ଚାରିପଟେ ଖସି ପଡ଼ୁଛନ୍ତି ।

ଅଳ୍ପ ସମୟ ପରେ ପବନ ବହିବାରୁ ନାବିକମାନେ ପାଲ ଉଡ଼ାଇଲେ । ଜାହାଜ ଚାଲିଲା । ମାତ୍ର ଘଡ଼ି ଘଡ଼ି ସମୁଦ୍ରବକ୍ଷରେ ବଡ଼ ବଡ଼ ତରଙ୍ଗ ଉଠିଲା । ଆକାଶରେ କଳା ମେଘ ଘୋଟିଗଲା । ଘଡ଼ଘଡ଼ି ଓ ବିଜୁଳି ମାରିଲେ । କୁଆଡୁ ଝଡ଼ ମାଡ଼ି ଆସିଲା । ସମୁଦ୍ରରେ ତାଳଗଛ ଉଚ୍ଚର ଲହଡ଼ି ଉଠିଲା । ମତ୍ସ୍ୟକନ୍ୟା ପାଇଁ ତ ଏ ସବୁ ଭାରି ମଜା କଥା । ଭୟରେ ନାବିକଙ୍କର ମୁହଁ କଳା ଶୁଖିଗଲା ।

ଅଳ୍ପ ସମୟ ମଧ୍ୟରେ ପ୍ରବଳ ବାତ୍ୟାରେ ଜାହାଜର ଖୁଣ୍ଟ ସବୁ ଉପୁଡ଼ି ପାଣିରେ ପଡ଼ିଲା । ଜାହାଜ ଭିତରେ ପାଣି ପଶିବାକୁ ଲାଗିଲା । ମତ୍ସ୍ୟକନ୍ୟା ଦେଖିଲା, ନାବିକମାନଙ୍କୁ ବିପଦ ଘେନେଇ ଆସୁଛି । ଜାହାଜରୁ ଖସୁଥିବା ପଟା ବା ଖୁଣ୍ଟ ତାକୁ ଆଘାତ କରିପାରେ ବୋଲି ତା'ର ମଧ୍ୟ ଆଶଙ୍କା ହେଲା । ସେ ଘନ ଅନ୍ଧକାର ଭିତରେ କାହାରି କିଛି

ଦେଖିବାର ଉପାୟ ନାହିଁ । ହଠାତ୍ ବିଜୁଳି ଆଲୁଅରେ ମତ୍ସ୍ୟକନ୍ୟା ଦେଖିଲା ଯେ ଜାହାଜ ଉପରେ ରାଜକୁମାର ନାହାନ୍ତି । ଜାହାଜ ଭାଙ୍ଗି ଯିବାରୁ ସେ ନିଶ୍ଚୟ ପାଣିକୁ ଖସିପଡ଼ିଛନ୍ତି । ମତ୍ସ୍ୟକନ୍ୟା ଖୁସି ହୋଇଗଲା । ଏଥର ରାଜକୁମାରଙ୍କ ସହିତ ତା'ର ଭେଟ ହେବ । ମାତ୍ର ମଣିଷମାନେ ଯେ ପାଣିରେ ବଞ୍ଚି ପାରନ୍ତି ନାହିଁ ! ଏହିକଥା ମନେ ପଡ଼ିଯିବାରୁ ସେ ବ୍ୟସ୍ତ ହୋଇ ପଡ଼ିଲା । ପାଣିରେ ବୁଡ଼ି ତାଙ୍କ ଉଆସ ପାଖରେ ପହଞ୍ଚିବା ବେଳକୁ ରାଜକୁମାର ତ ଆଉ ବଞ୍ଚି ନ ଥିବେ । ନା, ନା, ସେ ତାହା ହେବାକୁ ଦେବନାହିଁ । ପାଣିରେ ବୁଡ଼ି ମତ୍ସ୍ୟକନ୍ୟା ତାଙ୍କୁ ଚାରିଆଡ଼େ ଖୋଜି ପକାଇଲା । ଦେଖିଲା, ରାଜକୁମାର ଥୋଡ଼ାଏ ଦୂରରେ । ଶୀଘ୍ର ଶୀଘ୍ର ଲହଡ଼ି କାଟି ତାଙ୍କ ପାଖରେ ପହଞ୍ଚିଯାଇ ମତ୍ସ୍ୟକନ୍ୟା ତାଙ୍କୁ ପାଣି ଭିତରୁ ଟାଣି ଆଣିଲା ।

ସକାଳକୁ ଝଡ଼ ବନ୍ଦ । କିନ୍ତୁ ଜାହାଜର ଖଣ୍ଡେ ପଟା ମଧ୍ୟ ଦେଖିବାକୁ ମିଳିଲା ନାହିଁ । ଆକାଶରେ ସୂର୍ଯ୍ୟ ଧୀରେ ଧୀରେ ଉପରକୁ ଉଠିଲେ । ସକାଳର ସୂର୍ଯ୍ୟଙ୍କର କିରଣ ପାଣିରେ ପ୍ରତିଫଳିତ ହୋଇ ରାଜପୁତ୍ରଙ୍କ ମୁହଁରେ ପଡ଼ିବା ଦ୍ୱାରା ତାଙ୍କଠାରେ ପ୍ରାଣଶକ୍ତିର ସଞ୍ଚାର ହେଲା । ତଥାପି ସେ ଆଖିପତା ଖୋଲିଲେ ନାହିଁ । ମତ୍ସ୍ୟକନ୍ୟା ରାଜକୁମାରଙ୍କ ଉଜ୍ଜ୍ୱଳ, ପ୍ରଶସ୍ତ କପାଳ ଚୁମ୍ବନ କରି ତାଙ୍କୁ ଓଦା ହାତରେ ଆଉଁସିଲା । ସେ ଏକୁଟିଆ କ'ଣ କରିବ ତାକୁ ବୁଝି ହେଲା ନାହିଁ । ଚତୁର୍ଦ୍ଦିଗକୁ ଚାହିଁ ଦେଖିଲା ଦୂରରେ ସ୍ଥଳଭାଗ ଦିଶୁଛି । ରାଜକୁମାରଙ୍କୁ ଧରି ମତ୍ସ୍ୟକନ୍ୟା ସେହି କୂଳ ଆଡ଼କୁ ପହଁରିଲା । ସୁନ୍ଦର ନିରୋଳା ସ୍ଥାନଟିଏ । ପରିଷ୍କାର ସରୁବାଲିର ଉଷ୍ମଶଯ୍ୟାରେ ସେ ରାଜକୁମାରଙ୍କୁ ଶୁଆଇ ଦେଲା । ଅଳ୍ପଦୂରରେ ସମୁଦ୍ରଭିତରୁ ପାହାଡ଼ଟିଏ ମୁଣ୍ଡ ଦିଶୁଥାଏ । ମତ୍ସ୍ୟକନ୍ୟା ସେଇ ପାହାଡ଼ କଡ଼ରେ ଲୁଚିଯାଇ କ'ଣ ହେଉଛି ଲକ୍ଷ୍ୟ କରୁଥାଏ ।

ଅଳ୍ପ ସମୟ ପରେ ସେ ଦେଖିଲା, ଗୋଟିଏ ଝିଅ ରାଜକୁମାରଙ୍କ ଆଡ଼କୁ ଯାଉଛି । ରାଜକୁମାରଙ୍କ ଉପରେ ତା'ର ଆଖି ପଡ଼ିଯିବାରୁ ସେ ଚମକି ପଡ଼ିଲା । ତା'ର ଡାକ ଶୁଣି ଅଳ୍ପ ସମୟରେ କେତେଜଣ ଲୋକ

ଆସି ପହଞ୍ଚିଗଲେ । ଯେତିକିବେଳେ ରାଜକୁମାର ଆଖି ଖୋଲିଲେ । ଯେଉଁମାନେ ତାଙ୍କୁ ଘେରିବଥିଲେ ସେମାନଙ୍କୁ ଚାହିଁ ହସିଦେଲେ । ମତ୍ସ୍ୟକନ୍ୟା ଆଡ଼କୁ ଆଦୌ ଚାହିଁଲେ ନାହିଁ । କିଏ ତାଙ୍କର ଜୀବନ ରକ୍ଷା କରିଛି ସେ କଥା ରାଜକୁମାର ଜାଣି ପାରିଲେ ନାହିଁ । ମତ୍ସ୍ୟକନ୍ୟାକୁ ବଡ଼ ଖରାପ ଲାଗିଲା । ସମସ୍ତେ ରାଜକୁମାରଙ୍କୁ ଗୋଟିଏ ନଅର ଆଡ଼କୁ ନେଇ ଯାଉଥିବାର ଦେଖି ମତ୍ସ୍ୟକନ୍ୟା ପାଣିରେ ବୁଡ଼ିଗଲା ଓ ଘରକୁ ଫେରି ଆସିଲା ।



ମତ୍ସ୍ୟକନ୍ୟା ତ ସହଜେ ଶାନ୍ତ ଆଉ ଗମ୍ଭୀର । ଏ ଘଟଣା ପରେ ସେ କାହା ସହିତ କଥାବାର୍ତ୍ତା ନ କରି ମନମାରି ରହିଲା । ବେଳେ ବେଳେ କାହାକୁ ପଚାରେ, "ଯଦି ମଣିଷମାନେ ପାଣିରେ ବୁଡ଼ି ନ ଯାନ୍ତି ତେବେ କ'ଣ ସେମାନେ ଅମର ହୋଇ ରହିବେ ? ଆମେ ଯେମିତି ଏଠି

ସମୁଦ୍ରରେ ମରୁ, ସେମାନେ ସେମିତ ମରନ୍ତି ନାହିଁ ?" ଥରେ ଜଣେ ବୁଢ଼ୀ ତା'ର ପ୍ରଶ୍ନ ଶୁଣି କହିଲା, "ମଣିଷମାନେ ମରନ୍ତି । ସେମାନଙ୍କର ଆୟୁଷ ଆମଠାରୁ କମ୍ । ଆମେ ତିନଶହ ବର୍ଷଯାଏ ବଞ୍ଚୁ ଓ ମଲା ପରେ ଫେଣ ହୋଇ ପାଣିରେ ଭାସୁ । ମଲା ଲୋକର ଗୋଟିଏ କବର ମଧ୍ୟ ଆମେ କରୁନା । ଆମର ଅମର ଆତ୍ମା ନାହିଁ । ଥରେ ମଲେ ଆମେ ଆଉ ବଞ୍ଚିବୁ ନାହିଁ । ମଣିଷର କିନ୍ତୁ ଆତ୍ମା ଅଛି । ଶରୀର ନଷ୍ଟ ହେଲେ ମଧ୍ୟ ଆତ୍ମା ଅମର । ମାତ୍ର ଜଣେ ମଣିଷ ଯଦି ତତେ ଭଲପାଏ, ଏତେ ଭଲପାଏ ଯେ ତା'ର ବାପ ମାଙ୍କଠାରୁ ମଧ୍ୟ ତୁ ଅଧିକ ପ୍ରିୟ ହୋଇ ଉଠୁ, ସେ ସବୁବେଳେ ତୋର କଥା ଭାବୁଥାଏ ଏବଂ ତତେ ଏଇ ପୃଥିବୀରେ କନ୍ୟା ତା ପରେ କଦାପି ଭୁଲିବ ନାହିଁ ବୋଲି ଶପଥ କରେ ତେବେ ତା'ର ଆତ୍ମା ପ୍ରସାରିତ ହୋଇ ତୋ ଦେହକୁ ଚାଲିଆସିବ ଓ ତୁ ମଧ୍ୟ ମଣିଷ ପରି ମରଣୋତ୍ତର ସୁଖ ପାଇ ପାରିବୁ ।"

ଏ କଥା ଶୁଣି ମତ୍ସ୍ୟକନ୍ୟା କାହାକୁ କିଛି ନ କହି ସମୁଦ୍ରର ଗୁଣିଆଣି ପାଖକୁ ଗଲା । ତାକୁ ଦେଖି ଗୁଣିଆଣି କହିଲା, "ତୁ କ'ଣ ଚାହୁଁଛୁ ମୁଁ ଜାଣେ । ସେପରି କାମନା କରିବା ବଡ଼ ବୋକାମି ; କିନ୍ତୁ ତୁ କାହା କଥା ମାନିବୁ ନାହିଁ । ସୁକୁମାରୀ ରାଜା ଝିଅ ବଡ଼ କଷ୍ଟ ପାଇବୁ । ମୁଁ ଗୋଟିଏ ମନ୍ତୁର ପାଣି ଦେଉଛି ରଖ । କାଲି ସୂର୍ଯ୍ୟୋଦୟ ପୂର୍ବରୁ ତୁ କୂଳ ପାଖକୁ ଚାଲିଯିବୁ । ଶୁଖିଲାକୁ ଉଠିଯାଇ ଏ ମନ୍ତୁର ପାଣି ପିଇବୁ । ତେବେ ତୋର ଲାଞ୍ଜ ବଦଳି ମଣିଷପରି ଦୁଇଟି ଗୋଡ଼ ହୋଇଯିବ । ଖୁବ କଷ୍ଟ ସହିବାକୁ ହେବ ; କିନ୍ତୁ ତତେ ଲାଗିବ ଯେମିତି କିଏ ଛୁରୀରେ ଭୁଷି ପକାଉଛି । ସେଇଭଳି ଯନ୍ତ୍ରଣା ପାଇବୁ । ତା'ପରେ ଯାଇ ଅନନ୍ୟ ସୁନ୍ଦରୀ ଝିଅଟିଏ ହୋଇ ବାହାରିବୁ । ତତେ ଦେଖିଲା ଲୋକ କହିବ ତୋ ପରି ସୁନ୍ଦରୀ ନାହାନ୍ତି କ ନ ଥିଲେ । ଏଥିପାଇଁ ଅବଶ୍ୟ ଗୋଟିଏ ମୂଲ୍ୟ ଦେବାକୁ ପଡ଼ିବ । ତୋର କଥା କହିବା ଶକ୍ତି ଚାଲିଯିବ । ତୁ ହେବୁ ମୂକ ।"

ଘଟଣା ସବୁ ଗୁଣିଆଣୀ କହିବା ଅନୁଯାୟୀ ଘଟିଗଲା । ସମୁଦ୍ର କୂଳରୁ ଅପୂର୍ବ ସୁନ୍ଦରୀ ଝିଅଟିଏ ପାଇ ରାଜକୁମାର ତାକୁ ନଅରକୁ

ନେଇଗଲେ । ମତ୍ସ୍ୟକନ୍ୟାକୁ ସୁନ୍ଦର ମୂଲ୍ୟବାନ ପୋଷାକ ପିନ୍ଧାଇ ଦିଆଗଲା । ତା'ର ସେ ପୁରମୋହିନୀ ରୂପ ଦେଖି ସମସ୍ତେ ମୁଗ୍ଧ ହେଲେ । ଝିଅଟି ଯଦି ମୂକୀ ହୋଇ ନ ଥାନ୍ତା !



କିଛିଦିନ ଅନ୍ତେ ପଡ଼ୋଶୀ ରାଜ୍ୟର ରାଜକନ୍ୟା ସହିତ ରାଜ-କୁମାରଙ୍କର ବିବାହ ସ୍ଥିର ହେଲା । ବିବାହର ଦିନ ବଡ଼ ଧୁମ୍‌ଧାମ୍‌ରେ ମହୋତ୍ସବ । ନଗରର ସବୁ ଛକରେ ଘଣ୍ଟା ବାଜିଲା । ରାସ୍ତାର ଦୁଇ

କଡ଼ରେ ଛିଡ଼ାହୋଇ ସୁସଜ୍ଜିତ ସୈନ୍ୟମାନେ ବିଗୁଲ ଓ ତୁରୀ ବଜାଇଲେ । ମତ୍ସ୍ୟକନ୍ୟା ରାଜକୁମାରଙ୍କ ହାତକୁ ଧରି ଚୁମ୍ବନ ଦେଲା । ତା'ର ଛାତି ଫାଟିଗଲା ପରି ଲାଗିଲା । ରାଜକୁମାରଙ୍କ ବିବାହ ବାସିଦିନ ତା'ର ମୃତ୍ୟୁ ହେବ । ମେଞ୍ଚାଏ ଫେଣ ହୋଇ ସେ ସମୁଦ୍ରରେ ଭାସିବ ।

ବିଭାଘର ସରିଲା ପରେ ଯୁବରାଣୀଙ୍କୁ ଧରି ରାଜକୁମାର ସଦଳବଳେ ଘରକୁ ଫେରୁଥାନ୍ତି । ରାତିରେ ଜାହାଜ ନଙ୍ଗର ପକାଇ ସମୁଦ୍ର ମଝିରେ ରହିଲା ଓ ସମସ୍ତେ ଆନନ୍ଦ ଉତ୍ସବରେ ମାତିଲେ । ପାଣିକୁ ଲାଗି ମତ୍ସ୍ୟକନ୍ୟା ପୂର୍ବଦିଗକୁ ଚାହିଁଥାଏ । ଉଦୟ ସୂର୍ଯ୍ୟଙ୍କର ପ୍ରଥମ କିରଣ ପୃଥିବୀକୁ ଛୁଇଁଲା ମାତ୍ରେ ତା'ର ମୃତ୍ୟୁ ହେବ ।

ମତ୍ସ୍ୟକନ୍ୟା ଦେଖିପାରିଲା ତା ଭଉଣୀମାନେ ଜାହାଜ ଆଡ଼କୁ ଆସୁଛନ୍ତି । ପାଖକୁ ଆସି ସେମାନେ କହିଲେ, "ତତେ ରକ୍ଷା କରିବାକୁ ଆମେ ଆମର ସୁନ୍ଦର କେଶ କାଟି ଗୁଣିଆଣୀକୁ ଦେଇଛୁ । ସେ ଆମକୁ ଗୋଟିଏ ଛୁରୀ ଦେଇଛନ୍ତି । ଏଇ ନେ ସାବଧାନରେ ରଖ । ବଡ଼ ଧାରୁଆ ଛୁରୀ । ସୂର୍ଯ୍ୟୋଦୟ ପୂର୍ବରୁ ତୁ ରାଜକୁମାର ଛାତିରେ ଏ ଛୁରୀ ଭୁଷିଦେବୁ । ରାଜକୁମାରର ତାତଲା ରକ୍ତ ତୋ ପାଦରେ ପଡ଼ିଲେ ସେ ଦୁଇଟି ପୂର୍ବର ମାଛ ଲାଞ୍ଜରେ ପରିଣତ ହେବ ଓ ତୁ ପୁଣି ମତ୍ସ୍ୟକନ୍ୟା ହୋଇ ଆମ ପାଖକୁ ଫେରି ଆସିବୁ ।"

ରାଜକୁମାରଙ୍କ ଶୋଇବା ଘର ଭିତରକୁ ପଶି ମତ୍ସ୍ୟକନ୍ୟା ଦେଖିଲା ସୁନ୍ଦରୀ ଯୁବରାଣୀ ରାଜକୁମାରଙ୍କ ଛାତିରେ ମୁଣ୍ଡରଖି ନିଶ୍ଚିନ୍ତରେ ଶୋଇଯାଇଛନ୍ତି । ନଇଁପଡ଼ି ସେ ତାଙ୍କ କପାଳରେ ଧୀରେ ହାତ ବୁଲେଇ ଆଣିଲା । ପୂର୍ବଦିଗରେ ସିନ୍ଦୁରା ଫାଟି ଆସୁଥାଏ । ମତ୍ସ୍ୟକନ୍ୟା ଥରେ ଛୁରୀକୁ ଓ ଆଉ ଥରେ ରାଜକୁମାରଙ୍କୁ ଚାହିଁଲା । ତା ପରେ ସମୁଦ୍ର ଭିତରକୁ ଛୁରୀ ଫୋପାଡ଼ି ଦେଇ ନିଜେ ପାଣିକୁ ଡେଇଁ ପଡ଼ିଲା ।

ଯେତେବେଳେ ତା'ର ଆଖି ଖୋଲିଲା, ଦେଖିଲା ଅତି ସୁନ୍ଦରୀ ପରୀମାନେ ତାକୁ ଘେରି ବସିଛନ୍ତି ।

ବିସ୍ମୟରେ ସେ ପଚାରିଲା, "ମୁଁ କେଉଁଠି ?" ଜଣେ ଉତ୍ତର ଦେଲା "ତମେ ପରୀମାନଙ୍କ ମେଳରେ ଅଛ ।"

# ବଣ ହଂସ

ଅନେକ ଦିନ ତଳର କଥା । ଗୋଟିଏ ଦୂର ଦେଶରେ ଜଣେ ରାଜା ଥିଲେ । ତାଙ୍କର ଏଗାର ପୁଅ ଓ ଗୋଟିଏ ଝିଅ । ଝିଅଟିର ନାମ ଏଲିଜା । ରାଜା ପିଲାମାନଙ୍କୁ ଖୁବ୍ ସ୍ନେହ କରୁଥିଲେ । ସୁଖରେ ସେମାନଙ୍କ ଦିନ କଟୁଥିଲା ; କିନ୍ତୁ ସବୁଦିନ ତ ସମାନ ଯାଏନା । ରାଣୀ ମରିଯିବାରୁ ରାଜା ଆଉ ଥରେ ବାହାହେଲେ । ସେ ନୂଆ ରାଣୀ ଗୋଟାଏ ଡାହାଣୀ । ଏଲିଜା ଓ ତା ଭାଇମାନଙ୍କୁ ସେ ଦି ଆଖିରେ ଦେଖିପାରେ ନାହିଁ । ସବୁବେଳେ ସେମାନଙ୍କର ମନ୍ଦ ପାଞ୍ଚୁଥାଏ ।

ଦିନେ ନୂଆରାଣୀ ମନ୍ତ୍ର ବଳରେ ଏଗାରଜଣ ରଜାପୁଅଙ୍କୁ ହଂସ କରି ଉଡ଼େଇ ଦେଲା । ସେମାନେ ଝରକା ବାଟେ ଜଙ୍ଗଲକୁ ଉଡ଼ି



ଚାଲିଗଲେ । ତା'ପରେ ଡାଆଣୀ ଏଲିଜାର ଘନକେଶକୁ କାଟିଦେଇ ମନ୍ତ୍ରଦ୍ୱାରା ତା ମୁହଁକୁ ବିକୃତ କରି ପକାଇଲା । ଏଲିଜାର ବାପା ମଧ୍ୟ ତାକୁ ଚିହ୍ନି ପାରିଲେ ନାହିଁ । ବରଂ ଏଡ଼େ କୁତ୍ସିତ ଝିଅଟାକୁ ଦେଖିଲେ ସେ ଚିଡ଼ିଯାଆନ୍ତି । କେବଳ ଏଲିଜାର ପୋଷାକୁକୁର ଓ ଚଢ଼େଇମାନେ

ଚାହିଁ ଚାହୁଁଥା'ନ୍ତି । ମାତ୍ର ମୂକ ପଶୁଙ୍କର ବା ବଳ କଅଣ ? ସତ କଥାଟି ସେମାନେ କା'ହାକୁ କପରି ଜଣାଇବେ ?

ଏମିତିକା ହୀନିମାନିଆ ଜୀବନ ଏଲିଜା'ର ଅସହ୍ୟ ହେଲା । ଦିନେ କା'ହାକୁ କିଛି ନ କହି ଭାଇମାନଙ୍କୁ ଖୋଜିବାକୁ ସେ ନଅର ଛାଡ଼ି ପଳାଇଲା । ରଜାଝିଅ ଜନ୍ମରୁ ଦୁଃଖ କଷ୍ଟ ଜାଣି ନ ଥିଲା । ଆଉ ଚାଲି ନ ପା'ରି ଘୋର ଜଙ୍ଗଲ ଭିତରେ ହାଲିଆ ହୋଇ ବସିଲା । ରାତି ମାଡ଼ି ଆସୁଥାଏ । ଗୋଟିଏ ଗଛମୂଳେ ବସି ଏଲିଜା କାନ୍ଦିଲା । କାନ୍ଦି କାନ୍ଦି ଥକି ପଡ଼ିବାରୁ ସେଇଠି ଶୋଇପଡ଼ିଲା । ସକାଳୁ ନିଦରୁ ଉଠିଲା ପରେ ଏଲିଜାକୁ ଭଲ ଲାଗୁଥାଏ । ସେ ପୁଣି ଆଗେଇଲା । କେତେ ବାଟ ପରେ ଗୋଟିଏ ନଈ ପଡ଼ିଲା । ଛୋଟ ନଈଟିଏ ; କିନ୍ତୁ ପାଣି କାଚପରି ସଫା । ପାଣିରେ ନିଜର ପ୍ରତିବିମ୍ବ ଦେଖିଦେଇ ଏଲିଜା ଚମକି ପଡ଼ିଲା । ସେ କେଡ଼େ କୁତ୍ସିତ ଦିଶୁଛି ! ସେଇ ନଈରେ ଏଲିଜା ଗାଧୋଇଲା । ଗାଧୋଇ ସାରି ଦେଖେ ତ ସେ ତା'ର ପୂର୍ବରୂପ ଫେରି ପାଇଛି । ତାକୁ ଖୁବ୍ ଖୁସି ଲାଗିଲା ।

ଚାଲୁ ଚାଲୁ ଦିନ ସରିବାକୁ ଲାଗିଲା । ହଠାତ୍ ଏଲିଜା ଦେଖିଲା, ଏଗାରଟି ସୁନ୍ଦର ଧଳା ହଂସ ତଳକୁ ଖସୁଛନ୍ତି । ସେମାନେ ତା'ର ଅତି ନିକଟରେ ଆସି ଓହ୍ଲାଇଲେ ଓ ଡେଣା ଝାଡ଼ି ବସିଲେ । ସନ୍ଧ୍ୟାପରେ ହଂସଙ୍କର ଡେଣାମାନ ଝଡ଼ି ପଡ଼ିଲା ଓ ଏଗାରଟି ହଂସଙ୍କ ସ୍ଥାନରେ ଏଗାରଜଣ ରାଜକୁମାର ଉଭାହେଲେ । ଏମାନେ ତ ତା'ର ଭାଇ ! ଭାଇମାନଙ୍କ ଚେହେରା ଅନେକ ବଦଳି ଯାଇଥିଲେ ମଧ୍ୟ ଏଲିଜା ସେମାନଙ୍କୁ ସଂଗେ ସଂଗେ ଚିହ୍ନି ପାରିଲା । ଭାଇମାନଙ୍କୁ କୁଣ୍ଢେଇ ଧରି ସେ ବିକଳରେ କାନ୍ଦିଲା ।

ସାନ ଭଉଣୀକୁ ଦେଖି ଭାଇଙ୍କର ଆନନ୍ଦ କହିଲେ ନ ସରେ । ଭାଇ ଭଉଣୀଙ୍କର ମଧୁର ମିଳନ ପର୍ବ ସରନ୍ତେ ବଡ଼ଭାଇ ଏଲିଜାକୁ କହିଲା, "ଆମେ ସମସ୍ତେ ବଣୁଆ ହଂସ ହୋଇଯାଇଛୁ । ଦିନଯାକ ଆମେ ଆକାଶରେ ଉଡୁ । ସୂର୍ଯ୍ୟ ଅସ୍ତଗଲେ ମଣିଷ ହେଉ । ଆମେ ଏଠି ରହୁନା ।

ସମୁଦ୍ର ସେପାରିର ବଣ ଆମର ବାସସ୍ଥାନ । ତେବେ ବର୍ଷକୁ ଥରେ ଏଗାର ଦିନ ପାଇଁ ଆମକୁ ଘର ପାଖକୁ ଆସିବାକୁ ଅନୁମତି ମିଳେ । ଆସନ୍ତା କାଲି ଏଗାର ଦିନ ପୂରୁଛି । କାଲି ସମୁଦ୍ରକୁ ଫେରିବାକୁ ପଡ଼ିବ । ଆଉ ବର୍ଷେ ଆମେ ଏଠାକୁ ଆସିପାରିବୁ ନାହିଁ ।"



'ମତେ ସାଙ୍ଗରେ ନିଅ' କହି ଏଲିଜା ଭାଇଙ୍କ ସହିତ ଝଲିକଲା । ସମସ୍ତେ ରାତିସାରା ଲାଗି ଗୋଟିଏ ଶକ୍ତ ଜାଲ ବୁଣିଲେ । ସକାଳେ ଏଲିଜା

ଜାଲ ଉପରେ ଶୋଇଲା । ଏଗାରଟି ହଂସ ଥଣ୍ଟରେ ଜାଲଟିକୁ ଧରି ଆକାଶକୁ ଉଠିଲେ ଓ ନିରାପଦରେ ଯାଇଁ ସେମାନଙ୍କ ବଣରେ ପହଞ୍ଚାଇଲେ । ସମସ୍ତେ କ୍ଳାନ୍ତ ହୋଇ ପଡ଼ିଥାନ୍ତି । ଭାଇଭଉଣୀ ସାଙ୍ଗ ହୋଇ ଗୁମ୍ଫା ଭିତରେ ଶୋଇ ପଡ଼ିଲେ ।

ଭାଇମାନେ କିପରି ଉଦ୍ଧାର ପାଇବେ ସେହି ବୁଦ୍ଧି ବତାଇ ଦେବା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁ କରୁ ଏଲିଜାକୁ ନିଦ ଲାଗିଗଲା । ନିଦରେ ତା'ର ମନେହେଲା, ଯେପରି ସେ ଉଡ଼ି ଉଡ଼ି ସ୍ୱର୍ଗପୁର ଆଡ଼େ ଯାଉଛି । ସେଠାରେ ଜଣେ ପରୀ ତାଙ୍କୁ ଗୋଟିଏ ଫଳ ଦେଖାଇଲେ । ସେଇଟି ବିଛୁଆତି ଜାତୀୟ ଗଛର ଫଳ । ତୋଳିଲାବେଳେ ଗଛର ଡାଳ ପତ୍ରରେ ଦେହ ହାତ ବାଜିଲେ ଖୁବ୍ କୁଣ୍ଡେଇ ହୁଏ । ଫଳଟି ଦେଖାଇ ପରୀ ତାଙ୍କୁ କହିଲେ, "ଏଇଟିକୁ ଭଲକରି ଚିହ୍ନି ଥା । ତୁ ସାହସ ବାନ୍ଧି ପାରିଲେ ତୋର ଭାଇମାନେ ମୁକ୍ତ ହେବେ । ଏଇ ଯେଉଁ ଫଳଟି ଦେଖୁଛୁ ସେ ଗଛ ତୁ ଶୋଇଥିବା ଗୁମ୍ଫା ପାଖରେ ମଧ୍ୟ ଅଛି । ମାତ୍ର ସେ ଗଛ ତୋ କାମରେ ଆସିବ ନାହିଁ । ତୋର ଦରକାର କବର ଉପରେ ଉଠିଥିବା ଗଛର ଫଳ । ହାତ ଗଲୁ କରି ଫୋଟକା ହୋଇଗଲେ ମଧ୍ୟ ତୁ ସେ ଗଛରୁ ଫଳ ତୋଳିବୁ । ସେ ଫଳକୁ ହାତରେ ଦଳି ଭାଙ୍ଗିଲେ ତା ଭିତରୁ ଏକ ପ୍ରକାରର ତନ୍ତୁ ବାହାରିବ । ସେଇ ତନ୍ତୁରୁ ସୂତା କାଟି ତୁ ତୋର ଏଗାରଜଣ ଭାଇଙ୍କ ପାଇ ଏଗାରଟି କୋଟ୍ ତିଆରି କରିବୁ । ତୋର ଗୋଟିଏ ହଂସ ଭାଇ ଉପରେ ସେହି କୋଟ୍ ରୁ ଖଣ୍ଡେ ପକାଇ ଦେଲେ ମନ୍ତ୍ର କଟିଯିବ ଓ ସେ ତା'ର ପୂର୍ବ ରୂପ ଧାରଣ କରିବ; କିନ୍ତୁ ମନେ ରଖିଥା, ଥରେ ବୁଣା ଆରମ୍ଭ କଲେ ଯେତେଦିନ ଲାଗୁ ପଛେ ବୁଣା ନ ସରିବା ପର୍ଯ୍ୟନ୍ତ ତୁ କଥା କହିବୁ ନାହିଁ । ଯଦି ପଦେ କଥା କହୁ ତେବେ ତୋ ଭାଇଙ୍କର ପ୍ରାଣ ଚାଲିଯିବ ।" ଏତିକ କହି ପରୀ ଫଳଟି ଏଲିଜା ହାତରେ ଛୁଆଇଁ ଦେଲେ । ଏଲିଜାର ହାତ ଜଳି ଉଠିଲା ଓ ଯନ୍ତ୍ରଣାରେ ତା'ର ନିଦ ଭାଙ୍ଗିଗଲା ।

ସେତେବେଳେ ସୂର୍ଯ୍ୟ ଉଇଁଲେଣି । କିଛି ଫଳ ସଂଗ୍ରହ କରିବାକୁ ଏଲିଜାକୁ ବିଶେଷ କଷ୍ଟ କରିବାକୁ ପଡ଼ିଲା ନାହିଁ । ଏଲିଜା ସଙ୍ଗେ ସଙ୍ଗେ

କାମରେ ଲାଗିଗଲା । ଦିନ କେଉଁଠାରେ ପ୍ରଥମ କୋଟ୍ ସରିଗଲା । ଦିନେ ଦ୍ୱିତୀୟଟିକୁ ବସି ବୁଣୁଥାଏ । ଅପ୍ରତ୍ୟାଶିତ ଭାବେ ବାପାଙ୍କୁ ସାମନାରେ ଦେଖି ଏଲିଜା ଚମକି ପଡ଼ିଲା ।

ପାରିଧି ଉଦ୍ଦେଶ୍ୟରେ ବଣକୁ ଆସି ରାଜା ଦୈବାତ୍ ଏଲିଜାକୁ ଭେଟିଲେ । ଝିଅକୁ ଦେଖି ତାଙ୍କର ଆନନ୍ଦ କହିଲେ ନ ସରେ । ସେ କପରି ବଣକୁ ଆସିଲା ଓ ଆହୁରି ଅନେକ ପ୍ରଶ୍ନ ରାଜା ଏଲିଜାକୁ ପଚାରିଲେ ; ମାତ୍ର ଝିଅ କଥା କହି ପାରୁନାହିଁ ଦେଖି ତାଙ୍କର ବଡ଼ ଦୁଃଖ ହେଲା । ଭାଇମାନଙ୍କର ପ୍ରାଣନାଶ ଭୟରେ ଏଲିଜା ପାଟି ଫିଟାଇଲା ନାହିଁ ।

'ମୋ ସାଙ୍ଗରେ ଚାଲ', ରାଜା କହିଲେ, "କଅଣଟାଏ ବୁଣୁଛୁ ? ଭଲ ବୁଝି କଲେ ମୁଁ ତୋ ପାଇଁ ସିଲ୍କ ଓ ରେଶମର ସୁନ୍ଦର ପୋଷାକ କରିଦେବି । ଯାହା ଚାହିଁବୁ ତା ପାଇବୁ । ତୋର କଷ୍ଟ ଅଭାବ ରହିବ ନାହିଁ ।" ଏତିକି କହି ରାଜା ଏଲିଜାକୁ ଘୋଡ଼ା ଉପରକୁ ଉଠାଇ ନେଲେ । ସେ ବିଚାରୀ କରେ କ'ଣ ? ଭାଇଙ୍କର କଥା ଭାବି କାନ୍ଦି ପକାଇଲା । ରାଜା ତାକୁ ଆଶ୍ୱାସନା ଦେଇ କହିଲେ, "ମୁଁ ତୋର ଶୁଭାକାଂକ୍ଷୀ । ଯାହା କରୁଛି, ତୋର ମଙ୍ଗଳ ପାଇଁ ।" ଏହା ପରେ ସେ ନଅର ଆଡ଼େ ଘୋଡ଼ା ଛୁଟାଇ ଦେଲେ । ପଛରେ ସୈନ୍ୟସାମନ୍ତ ଆନନ୍ଦରେ ଧାଉଁଥାନ୍ତି ।

ନଅରରେ ପହଞ୍ଚି ରାଜା ଏଲିଜାର ମନ ଭୁଲାଇବାକୁ ଚେଷ୍ଟା କଲେ । ମାତ୍ର କୌଣସି ପ୍ରକାରୁ ମଉଜ ମଜଲିସ୍ ଆଡ଼କୁ ତା'ର ମନ ଗଲା ନାହିଁ । ଦିନଯାକ ବସି ଭାଇଙ୍କପାଇଁ କୋଟ୍ ବୁଣୁଥାଏ । ଆଖିରେ ସବୁବେଳେ ଲୁହ । ଏଲିଜାର କାର୍ଯ୍ୟକଳାପ ଦେଖି ରାଜଗୁରୁ କହିଲେ ଯେ ସେ ଗୋଟାଏ ଡାଆଣୀ । ରାଜା ପ୍ରଥମରୁ ଏ କଥାରେ କାନ ଦେଉ ନ ଥିଲେ । ମାତ୍ର ଲୋକ ଦେଖନ୍ତି ଏଲିଜା ପ୍ରତିଦିନ କବରଖାନା ଆଡ଼େ ଯାଉଛି । କୋଟ୍ ବୁଣିବା ପାଇଁ ଫଳ ଆଣିବାକୁ ସେ କବରଖାନା ଯାଏ । ମାତ୍ର ସେ କଥା ବା ଜାଣିଛି କିଏ ? ସମସ୍ତେ ଭାବନ୍ତି ଡାଆଣୀଟା ରାତିରେ

କବରଖାନା ଯାଉଛୁ । ରଜା ମଧ୍ୟ ଶେଷରେ ବାଧ୍ୟ ହୋଇ ରାଜଗୁରୁଙ୍କ କଥା ବିଶ୍ୱାସ କଲେ । ଡାଆଣୀଙ୍କୁ ପୋଡ଼ ଦେବାର ନିୟମ । ଏଲିଜା ପୋଡ଼ା ହେବାର ଦିନ ସ୍ଥିର ହୋଇଗଲା ।

ଡାଆଣୀ କିପରି ପୋଡ଼ାହେବ ଦେଖିବା ପାଇଁ ସେଦିନ ରାଜ୍ୟସାରା ଲୋକ ଜମିଥାନ୍ତି । ଏଲିଜାକୁ ଫାଶୀ ଆସାମୀର ପୋଷାକ ପିନ୍ଧାଇ ଘୋଡ଼ା



ଗାଡ଼ିରେ ବଧଭୂମିକୁ ନିଆଗଲା । ତା'ର ଫୁଲପରି କଅଁଳିଆ ସୁନ୍ଦର ମୁହଁ ଝାଉଁଳି ପଡ଼ିଥାଏ । ଓଠ ଦୁଇଟି ମଝିରେ ମଝିରେ ଥରି ଉଠୁଥାଏ । ହାତ କିନ୍ତୁ କୋଟ୍ ବୁଣାରେ ବ୍ୟସ୍ତ । ମରିବାକୁ ଯାଉଥିବାବେଳେ ମଧ୍ୟ ତା'ର କାମ ବନ୍ଦ ନଥାଏ । ବୁଣା ସରିଥିବା ଦଶଟି କୋଟ୍ ତା ପାଖରେ ପଡ଼ିଥାଏ । ଶେଷ କୋଟ୍‌ଟି ବୁଣା ଚାଲିଥାଏ ।

ଏଲିଜାକୁ ଛୁଇଁ ଲୋକେ ନାନା କଥା କହୁଥାନ୍ତି । ତା'ର ଥରିଲା ଓଠକୁ ଦେଖି ସେମାନେ ଧରି ନେଇଥାନ୍ତି ଯେ ଡାଆଣୀ ଗୁଣୁଗୁଣୁ ହୋଇ ମନ୍ତ୍ର ପଢ଼ୁଛି । ତାକୁ ମାରି ପକେଇବାକୁ କେତେକ ଉତ୍ୟକ୍ତ ବ୍ୟକ୍ତି ତା ଆଡ଼କୁ ମାଡ଼ିଗଲେ । ଆଉ ମୂହୂର୍ତ୍ତକରେ ସେମାନେ ତା'ର କୋଟ୍-ଗୁଡ଼ିକୁ ନଷ୍ଟ କରି ଦେଇଥାଆନ୍ତେ । ମାତ୍ର ସେତିକିବେଳେ ହଠାତ୍ ଏଗାରଟି ଧଳା ହଂସ ଡେଣା ପିଟି ଆକାଶରୁ ଖସିଲେ । ଉପରେ ସମସ୍ତେ ପଛଘୁଞ୍ଚାଦେଇ ଦୂରକୁ ହଟିଗଲେ ।

ଘାତକ ଏଲିଜାର ହାତଧରି ଘୋଡ଼ାଗାଡ଼ିରୁ ଓହ୍ଲାଇ ଦେଲାବେଳେ ସେ ତରବରରେ ଗୋଟିଏ ଗୋଟିଏ କୋଟ୍ ହଂସ ଭାଇଙ୍କ ଉପରକୁ

ଫୋପାଡ଼ି ଦେଲା । ସମସ୍ତେ ଦେଖିଲେ, ଏଗାରଟି ହଂସଙ୍କ ବଦଳରେ ଏଗାରଜଣ ରାଜକୁମାର ଛିଡ଼ା ହୋଇଛନ୍ତି । କେବଳ ସାନ ଭାଇର ଗୋଟିଏ ହାତ ସ୍ଥାନରେ ଡେଣା ରହିଯାଇଛି । କାରଣ ତା କୋଟ୍‌ର ହାତ ଗୋଟିଏ ବୁଣା ହୋଇ ପାରି ନଥିଲା ।

"ଏଥର ମୁଁ କଥା କହିବ" ; ଏଲିଜା ପାଟି ଖୋଲିଲା, "ମୁଁ ନିର୍ଦ୍ଦୋଷ ।"

ସେମାନଙ୍କ ଆଖି ଆଗରେ ଯାହା ସବୁ ଘଟିଗଲା, ତାହା ଦେଖି ସମସ୍ତେ ଦୋଷୀଙ୍କ ପରି ମୁଣ୍ଡ ନୁଆଁଇ ଛିଡ଼ା ହେଲେ । ରାଜକୁମାରୀଙ୍କ ମୁହଁକୁ ଚାହିଁବାକୁ ସେମାନଙ୍କର ସାହସ ନ ଥିଲା । ଦୀର୍ଘକାଳର ଦୁଶ୍ଚିନ୍ତା, ଦୁଃଖକଷ୍ଟ ଓ ଯନ୍ତ୍ରଣା ଫଳରେ ଏଲିଜା ମୂର୍ଚ୍ଛା ହୋଇ ବଡ଼ଭାଇ ଉପରକୁ ଢଳି ପଡ଼ିଲା ।

ଏଲିଜାକୁ ସମ୍ଭାଳି ଧରି ରାଜକୁମାର କହିଲେ, "ହଁ, ସେ ନିର୍ଦ୍ଦୋଷ ।" ତା'ପରେ ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ କଥା ବର୍ଣ୍ଣନା କଲା । ସେ କଥା କହୁଥିବା ସମୟରେ ଶତସହସ୍ର ଗୋଲାପର ସୁଗନ୍ଧରେ ଚତୁର୍ଦ୍ଦିଗ



ମହକି ଉଠିଲା । ଏଲିଜାକୁ ପୋଡ଼ିବା ପାଇଁ ପୋତା ଯାଇଥିବା ଗଛର ଛଡ଼ସବୁ କଅଁଳ ଶାଖା ମେଲିଲେ ଓ ପ୍ରତିଟିରେ ଫୁଲ ଫୁଟିଗଲା । ଗୋଟିଏ

ଉଜ୍ଜ୍ୱଳ ଚକ୍ ଚକ୍ ଫୁଲକୁ ରାଜା ନିଜେ ତୋଳି ଏଲିଜା ପୋଷାକରେ ଖୋସିଦେଲେ ।

ଅଳ୍ପ ସମୟ ମଧ୍ୟରେ ଏଲିଜା ଚେତା ଫେରି ପାଇ ଉଠି ଛିଡ଼ା ହେଲା । ତା ମୁହଁରେ ପ୍ରଶାନ୍ତ ଓ ଆନନ୍ଦର ଭାବ ଚହଟୁଥାଏ । ସେଇ ଶୁଭ 'ମୁହୂର୍ତ୍ତରେ ସବୁ ଚର୍ଚ୍ଚର ଘଣ୍ଟାମାନେ ଏକ ସମୟରେ ବାଜି ଉଠିଲେ । ଆକାଶରେ ଦଳ ଦଳ ପକ୍ଷୀ ଗୀତ ଗାଇ ଉଡ଼ିଲେ । ମହା ଉଲ୍ଲାସରେ ରାଜା ଗୋଟିଏ ବିରାଟ ଶୋଭାଯାତ୍ରାରେ ଏଲିଜାକୁ ଧରି ଉଆସକୁ ଫେରିଲେ । ଏପରି ଜାକଜମକପୂର୍ଣ୍ଣ ଶୋଭାଯାତ୍ରା କେବେ ଦେଖା ନ ଥିଲା କି ଶୁଣା ନ ଥିଲା ।



# ବଡ଼ ଗୋପାଳ ଓ ସାନ ଗୋପାଳ

ଗୋଟିଏ ଗାଁରେ ଦି ଜଣ ଲୋକ ଥାଆନ୍ତି । ଦୁହିଁଙ୍କର ନାମ ଗୋପାଳ । ଜଣଙ୍କର ଚାରୋଟି ଘୋଡ଼ା ଓ ଆଉ ଜଣଙ୍କର ଗୋଟିଏ ଘୋଡ଼ା ଥାଏ । ଦୁଇ ଗୋପାଳକୁ ଚିହ୍ନଟ କରିବାକୁ ଲୋକେ ଚାରି ଘୋଡ଼ାର ମାଲିକକୁ ବଡ଼ ଗୋପାଳ ଓ ଆରକକୁ ସାନ ଗୋପାଳ ନାଁ ଦେଇଥିଲେ ।

ସପ୍ତାହର ଛଅଦିନ ସାନ ଗୋପାଳ ବଡ଼ ଗୋପାଳର ଜମି ଚଷେ । ଏହି ଛଅଦିନ ସାନ ଗୋପାଳର ଘୋଡ଼ା ବଡ଼ର ଜମି ହଳ କରିବାରେ ଲାଗେ । ସପ୍ତାହର ବାକି ଦିନଟି ବଡ଼ ଗୋପାଳ ତା'ର ସବୁ ଘୋଡ଼ା ସାନକୁ ଦିଏ । ସାନ ତ ଗରିବ । ମୁଲିଆ ଲଗାଇ ଜମି ଚଷିବାକୁ ତା'ର ପଇସା ନ ଥାଏ । ଏଣେ ପାଞ୍ଚଟା ଘୋଡ଼ାକୁ ସେ ଏକୁଟିଆ କରିବ କ'ଣ ?

ଦିନକର କଥା । ସାନ ତା ଜମିରେ ହଳ କରୁଥାଏ । ପାଞ୍ଚ ଘୋଡ଼ାଙ୍କୁ ପାହାରେ ପାହାରେ ପକାଇ କହୁଥାଏ, "ଚାଲରେ ମୋ ଘୋଡ଼ାଏ" । କଥାଟା ବଡ଼ କାନରେ ପଡ଼ିଗଲା । ସେ ପାଟିକରି କହିଲା, "ଖବରଦାର୍ ! ସେମିତି କହନା । କାରଣ ତୋର ତ କେବଳ ଗୋଟିଏ ଘୋଡ଼ା ।"

ସାନ ଆଉଥରେ ରଡ଼ ଦେଲା, "ଚାଲରେ ମୋ ଘୋଡ଼ାଏ ।"

ବଡ଼ କ୍ରୁଦ୍ଧ ହୋଇ ଗର୍ଜିଲା, "ହେଇ ! ଆଉ ଥରେ ଯଦି ସେମିତି କହିବୁ ତେବେ ତୋ ଘୋଡ଼ା ମୁଣ୍ଡ ଛିଣ୍ଡା କରିଦେବି ।"

"ନାଇଁ, ନାଇଁ, ଆଉ ସେମିତି କହିବି ନାହିଁ", ସାନ ଡରିଯାଇ କହିଲା । ସେତିକିବେଳେ କେଇଜଣ ଚାଷୀ ସାନକୁ ଦେଖି ହସିଦେଇ

ଆଡ଼କୁ ବଢ଼ିଲେ । ସାନ ଖୁସିରେ କହି ପକାଇଲା, "ଭଲରେ ମୋ ଘୋଡ଼ାଏ ।"

"ଦଉଡ଼ ଚଲେଇ ତୋ ଘୋଡ଼ାକୁ ରଖିଥା" କହି ବଡ଼ ଗୋଟାଏ ମୋଟା ଶାବଳରେ ସାନ ଗୋପାଳ ଘୋଡ଼ାର କାନମୁଣ୍ଡାରେ ପାହାରେ କଷିଦେଲା । ଘୋଡ଼ା ଖତମ୍ ।

"ଆହା ମୋ ଘୋଡ଼ାରେ" କହି ସାନ ବସି କାନ୍ଦିଲା । ଆଉ କାନ୍ଦିଲେ କ'ଣ ଘୋଡ଼ା ଫେରିବ । ସେଇଠୁ ଉଠି ମଲା ଘୋଡ଼ାର ଛାଲ



ଉତା'ରି ଶୁଖାଇଲା । ଯେଉଁଦିନ ଛାଲ ଶୁଖିଗଲା ସେଦିନ ତାକୁ ବାନ୍ଧି ବିକିବା ପାଇଁ ସହରକୁ ଚାଲିଲା ।

ଯାଉ ଯାଉ ବାଟରେ ସଞ୍ଜ ହେଲା । ସାନ ଗୋପାଳ ବାଟବଣା ହୋଇ ସହରରେ ପହଞ୍ଚିବାର ଆଶା ଛାଡ଼ିଦେଲା । ରାତିଟା କେଉଁଠି ହେଲେ ଆଶ୍ରୟ ନେବାକୁ ପଡ଼ିବ । ଅଚିହ୍ନା ଜାଗା । ଆଗରେ ଗୋଟାଏ ଘର ଦେଖି ସାନ ସେଠିକି ଗଲା । ଜଣେ ସ୍ତ୍ରୀ ଲୋକ ବାହାରି ଆସି ତା ସ୍ୱାମୀ ଘରେ ନାହାନ୍ତି କହି କବାଟ ବନ୍ଦ କରିଦେଲା । ଆଉ ଉପାୟ କ'ଣ ? ଘରକୁ ଲାଗି ଭଙ୍ଗା ଚାଳିଆଟିଏ । ତା'ରି ଉପରେ ରାତିଟା କଟାଇଦେବାକୁ ଗୋପାଳ ଚାଳ ଉପରକୁ ଉଠିଲା ।

ଝରକା ଫାଙ୍କରେ ଗୋପାଳ ଦେଖିଲା ଘର ଭିତରେ ଖୁବ୍ ଜମିଛି । ଟେବୁଲ ଉପରେ ଲୋଭମୟ ଖାଦ୍ୟ ବଢ଼ା ହୋଇଛି । ଖୁସି ଗପରେ ମାତି ସେ ସ୍ତ୍ରୀଲୋକ ଓ ନଗରପାଳକ ବସି ଖାଉଛନ୍ତି । ଗୃହସ୍ୱାମୀ ନଗରପାଳକଙ୍କୁ ଘୃଣା କରେ । ତା ଅନୁପସ୍ଥିତିରେ ଘରେ ଏ ମଜା ଚାଲିଛି । ଅଳ୍ପ ସମୟ ପରେ ଘୋଡ଼ାର ଟାପୁ ଶୁଭିଲା । ସ୍ୱାମୀ ଫେରିଲେ ଜାଣିପାରି ସ୍ତ୍ରୀ ଲୋକଟି ନଗରପାଳକଙ୍କୁ ଗୋଟିଏ ସିନ୍ଦୁକ ଭିତରେ ପୂରାଇ ଲୁଚାଇଦେଲା ।

ଚାଳ ଉପରେ ଗୋପାଳକୁ ଦେଖି ଗୃହସ୍ୱାମୀ ତାକୁ ଡାକିଲେ ଓ ରାତିଭୋଜନ ପାଇଁ ନିମନ୍ତ୍ରଣ କଲେ ; କିନ୍ତୁ ସେ ବଦ୍‌ମାସ ସ୍ତ୍ରୀ ଦୁହିଁଙ୍କୁ ଦ ଦ ଖଣ୍ଡ ଶୁଖିଲା ରୁଟି ବାଢ଼ିଦେଲା । ଗୋପାଳ ଯେଉଁ ବଢ଼ିଆ ଜିନିଷସବୁ ଦେଖିଥାଏ ସେଥିରେ ତାକୁ ଶୁଖିଲା ରୁଟି ରୁଚୁଛି କେଉଁଠୁ ? ସେ ତା'ର ଘୋଡ଼ା ଚମଡ଼ା ଥିବା ବ୍ୟାଗ ଉପରେ ଚଢ଼ିଗଲା । 'କ୍ରୁଁ' କରି ଗୋଟାଏ ଶବ୍ଦ ହେଲା ।

"ସେ ବ୍ୟାଗରେ କ'ଣ ଅଛି ?" ଗୃହସ୍ୱାମୀ ପଚାରିଲେ ।

"ଗୋଟିଏ ସର୍ବଜ୍ଞ ବେତାଳ ।"

ଲୋକଟି ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ସେ କଅଣ କହୁଛି ।"

"କହୁଛି ଯେ ଆଲମାରି ଭିତରେ ଡେକ୍‌ଚିରେ ଭଲ ମାଂସ ତରକାରି ଅଛି ।"

ଗୃହସ୍ୱାମୀ ଦେଖିଲା ବେତାଳ କଥା ଏକଦମ ଠିକ୍ ।

ମାଂସ ବଢ଼ା ହୋଇ ଟେବୁଲ ଉପରେ ଥୁଆ ହୋଇଥିଲା ।

ବ୍ୟାଗ ଭିତରୁ ପୁଣି ଥରେ 'କ୍ରୁଁ' ଶବ୍ଦ ଆସିଲା । ଗୋପାଳ ବୁଝାଇ ଦେଲା, "ବାକ୍‌ସ ପଛପଟେ ବଢ଼ିଆ ମଦ ଅଛି ।"

ଆଶ୍ଚର୍ଯ୍ୟ ! ଏଥର ବି ବେତାଳ ଠିକ୍ କହିଲା । ଏ ବେତାଳର କରାମତି ତ କିଛି କମ୍ ନୁହଁ । ଲୋକଟି ତାଡାଏ ନୋଟ୍ ଗୋପାଳ ହାତରେ ଗୁଞ୍ଜିଦେଇ ବ୍ୟାଗଟିକୁ ମାଗିଲା । ଟଙ୍କାତକ ପକେଟରେ ପୂରାଇ ଗୋପାଳ କହିଲା ଯେ ତା'ର ସେ ସିନ୍ଦୁକଟି ଦରକାର । ଗୃହସ୍ୱାମୀ କିଛି ଆପତ୍ତି ନ କରି ରାଜି ହୋଇଗଲା ।

ସିନ୍ଦୁକ ଗୋଡ଼ରେ ଚକ ଲାଗିଥାଏ । ଆରାମରେ ଖାଇପିଇ ସାରି ଗୋପାଳ ସିନ୍ଦୁକଟି ଗଡ଼ାଇ ଗଡ଼ାଇ ଘରୁ ବାହାରି ଆସିଲା । ଏଣେ



ସିନ୍ଦୁକ ଭିତରେ ନଗରପାଳକଙ୍କ ଅବସ୍ଥା ଖରାପ । ଏ ବିପଦରୁ ରକ୍ଷା

ପାଇବା ପାଇଁ ସେ ଠାକୁରଙ୍କୁ ଡାକୁଥାନ୍ତି । ତାଙ୍କଠାରୁ ଆଉ ତାଡ଼ାଏ ନୋଟ୍ ହସ୍ତଗତ କରି ସାରିବା ପରେ ଗୋପାଳ ସିନ୍ଦୁକ ଖୋଲିଦେଲା । ତା ପରେ ମହା ଆନନ୍ଦରେ ଘରକୁ ଚାଲିଲା ।

ସାନ ଏତେ ଟଙ୍କା କେଉଁଠୁ ପାଇଲା ଭାବି ଭାବି ବଡ଼ ଆଉ ଥୟ ଧରି ପାରିଲା ନାହିଁ । ଦିନେ ସାନକୁ ଏହି କଥା ପଚାରି ଦେଲା । ସାନ କହିଲା, ଘୋଡ଼ାର ଚମଡ଼ା ବିକି ସେ ଭଲ ରୋଜଗାର କରିଛି । ଏ କଥା ଶୁଣି ବଡ଼ କି ସମ୍ଭାଳି ହୁଏ ? ସଙ୍ଗେ ସଙ୍ଗେ ଯାଇ ତା'ର ଚାରି ଘୋଡ଼ାକୁ ମାରି ପକାଇଲା । ସେମାନଙ୍କ ଚମଡ଼ା ଉତାରି ଶୁଖାଇଲା । ଦିନେ ଚମଡ଼ାତକ ଧରି ବିକିବା ପାଇଁ ସହର ବାହାରିଲା ।

ବଡ଼ ଚମଡ଼ାର ଅସମ୍ଭବ ମୂଲ୍ୟ ହାଙ୍କୁଛି ଦେଖି ମୋଚିମାନେ ଭାବିଲେ ଲୋକଟା ସେମାନଙ୍କ ସହିତ ଥଟ୍ଟା ଖେଳୁଛି । ସମସ୍ତେ ମିଶି ତାକୁ ଟାଙ୍ଗେ ଛେଚିଲେ । ସେ କାନମୁଣ୍ଡା ଆଉଁସି ଘରକୁ ଫେରିଲା । ବାଟଯାକ ସାନ ଉପରେ ରକ୍ତଚନ୍ଦନ ଘୋଟୁଥାଏ । ଗାଁରେ ସାନକୁ ଦେଖିବା ମାତ୍ରେ କିଛି କଥାବାର୍ତ୍ତା ନ କରି ଆଗ ତାକୁ ମାଡ଼ିବସି ବାନ୍ଧି ପକାଇଲା । ତା ପରେ ସାନକୁ ଗୋଟାଏ ଅଖା ଭିତରେ ପୂରେଇ ସିଧା ଚାଲିଲା ନଈ ଆଡ଼କୁ । ବାଟରେ ମନ୍ଦିର ପଡ଼େ । ଯେଉଁ କାମ କରିବାକୁ ଯାଉଛି ସେଥିପାଇଁ ବଡ଼ ମନକୁ ପାପ ଛୁଉଁଥାଏ । କଅଣ ଭାବିଲା ଅଖାଟାକୁ ରାସ୍ତା କଡ଼ରେ ଥୋଇ ଦେଇ ଠାକୁରଙ୍କୁ ମୁଣ୍ଡିଆଟିଏ ପକାଇବାକୁ ମନ୍ଦିର ଭିତରକୁ ଗଲା ।

ସେତିକିବେଳେ କପାଳକୁ ଅନ୍ଧ ଗୋଟିଏ ଗାଈଆଳ ଟୋକା ସେ ବାଟେ ଯାଉଥାଏ । ସ୍ୱର୍ଗରେ କେତେ ସୁଖ ! ଗାଈ ଜଗିବା ବଡ଼ କଷ୍ଟ । ବ୍ୟାଗ ଭିତରୁ ସାନ ତାକୁ ଡାକି କହିଲା, "ଏଇ ଅଖା ଭିତରେ ପଶିଯା । ଅଧଘଣ୍ଟାରେ ସ୍ୱର୍ଗରେ ପହଞ୍ଚିଯିବୁ । ମୁଁ ସ୍ୱର୍ଗକୁ ଯାଉଛି ।"

ଗାଈଆଳ ଟୋକା ଅଖା ଖୋଲି ଗୋପାଳକୁ ତା ଭିତରୁ ବାହାର କରିଆଣି ନିଜେ ଅଖାରେ ପଶିଗଲା । ତା'ର ଗାଈମାନଙ୍କୁ ଅଡ଼ାଇ ଗୋପାଳ ଚାଲିଲା ଘରକୁ ।

ମନ୍ଦିରରୁ ଆସି ବଡ଼ ଅଖାକୁ ବୋହି ନେଇ ନଈ ଭିତରକୁ ଫୋପାଡ଼ି ଦେଲା । ଫେରିବା ବାଟରେ ଦେଖିଲା ସାନ ପଲେ ଗାଈ ଅଡ଼େଇ ମନ ଖୁସିରେ ଯାଉଛି ।

ସେ ଚମକି ପଡ଼ିଲା । "ଆରେ !" ସେ ପାଟିକରି କହିଲା, "ମୁଁ ପରା ତତେ ନଈରେ ଫିଙ୍ଗି ଦେଇ ଆସିଲି !"

"ଠିକ୍ ।"

"ତୁ କଅଣ ଏଠି ? ପୁଣି ଏତେ ଗାଈ କେଉଁଠୁ ପାଇଲୁ ?"

"ଏମାନେ ସମୁଦ୍ର ଗାଈ", ସାନ କହିଲା, "ନଈ ଭିତରକୁ ଚଢ଼ି ଆସିଥିଲେ । ମୁଁ ସେମାନଙ୍କୁ ନେଇ ଆସିଲି । ଖୁବ୍ ଭଲ ଯୋଗରେ ମୁଁ ନଈରେ ବୁଡ଼ିଲି ।"

"ତୁ କପାଳଆଟାଏ" ବଡ଼ କହିଲା, "ଆଚ୍ଛା, ତୁ କ'ଣ ଭାବୁଛୁ ନଈରେ ବୁଡ଼ିଲେ ମତେ କିଛି ଗାଈ ମିଳିଯିବ ?"

"ମିଳିବ ନାହିଁ କାହିଁକି ? ତେବେ ଶୀଘ୍ର ଯିବାକୁ ହେବ । ଯଦି ଚାହିଁ ମୁଁ ତୁମକୁ ଠିକ୍ ଜାଗାରେ ପାଣିରେ ବୁଡ଼ାଇ ଦେବି ।"

"ଧନ୍ୟବାଦ । କିନ୍ତୁ ମନେରଖ ଯଦି ଗାଈ ପାଇ ନ ପାଏ ଫେରିଲେ ତତେ ଥଣ୍ଡା କରିଦେବି ।

"ସେ ତ ପର କଥା ।" ସାନ କହିଲା, "ଏଇକ୍ଷଣି କାହିଁକି ଭାଗୁଛ ?"

"ଅଖାରେ ଗୋଟାଏ ପଥର ବାନ୍ଧି ଦେ । ଯେମିତି ମୁଁ ଶୀଘ୍ର ଯାଇଁ ପାଣି ତଳେ ପହଞ୍ଚିଯିବି ।"

"ସେ କଥା ଚିନ୍ତା କରନା" କହି ସାନ ଅଖାରେ ଓଜନିଆ ପଥରଟାଏ ଆଣ୍ଟାକରି ବାନ୍ଧିଦେଲା । ତା ପରେ ନଈ ପାଖକୁ ଯାଇ ପୋଲ ଉପରୁ ଅଖାଟିକୁ ତଳକୁ ଠେଲିଦେଲା ।



ଭୟଙ୍କର ଗୋଟାଏ ଶବ୍ଦ ହେଲା । ମୁହୂର୍ତ୍ତକ ଭିତରେ ବୁଡ଼ି ଯାଇ ଗଭୀର ପାଣି ଭିତରେ ।



# ଅସୁନ୍ଦର ବତକ ଛୁଆ

ଗୋଟିଏ ବତକ ବସି ଅଣ୍ଡା ଉଷୁମାଉଥାଏ । ଗୁଡ଼ାଏ ଦିନ ବିତିଗଲା । ବସି ବସି ବତକ କ୍ଲାନ୍ତ ହୋଇଯାଇଥାଏ । ଦିନେ ଦେଖିଲା ଗୋଟିଏ ଅଣ୍ଡା ଫାଟିଛି । କୁଁ କୁଁ ହୋଇ ତା ଭିତରୁ ଛୁଆଟିଏ ବାହାରି ଆସିଲା । ଗୋଟିକ ପରେ ଗୋଟିଏ ସବୁ ଅଣ୍ଡା ଫାଟି ଛୁଆ ହେଲେ । ବାକି ରହିଗଲା କେବଳ ଗୋଟିଏ ବଡ ଅଣ୍ଡା । ସେଇଟିକୁ ସେ ଉଷୁମାଉଥାଏ ।

ଦିନେ ତା'ର ସାଙ୍ଗ ବତକ ଆସି ପହଞ୍ଚିଲା । ପଚାରିଲା, "କେମିତି ଅଛୁ ?"

"ଗୋଟିଏ ଅଣ୍ଡା ଜମାରୁ ଫାଟୁ ନାହିଁ ।" ବତକ କହିଲା ।

"ଦେଖେ ଦେଇଟା" କହି ସାଙ୍ଗ ଅଣ୍ଡାଟାକୁ ଅନେଇଲା । ସେଇଟିକୁ ଦେଖୁ ଦେଖୁ କହିଲା, "ଏଇଟାତ ଟର୍କି କୁକୁଡ଼ାର ଅଣ୍ଡା । ଥରେ ଛୁଆ କରିବାକୁ ମତେ ଏହିପରି କେତେଟା ଅଣ୍ଡା ଦିଆ ଯାଇଥିଲା । ମାତ୍ର ସେଉଁ ଛୁଆ ହେଲେ ସେମାନେ ପାଣିରେ ପାଣିପାଖ ମାଡ଼ିଲେ ନାହିଁ । ତୁ ମୋ କଥା ମାନ । ଏ ଅଣ୍ଡାକୁ ଛାଡ଼ିଦେ । ଯା, ଛୁଆଙ୍କୁ ପହଁରା ଶିଖା ।"

ବତକ କହିଲା, "ଏତେଦିନ ଯେତେବେଳେ ବସିଲାଣି ଆଉ ଅଳ୍ପ ଦିନ ବସି ଦେଖେ ।"

"ତୋ ଇଚ୍ଛା" କହି ସାଙ୍ଗ ବିଦାୟ ନେଲା ।

ଶେଷରେ ସେଇ ବଡ଼ ଅଣ୍ଡା ଫାଟିଲା । ଚିଁ, ଚିଁ ହୋଇ ତା ଭିତରୁ ଛୁଆଟିଏ ବେଇଁ ପଡ଼ିଲା । ଖୁବ୍ ବଡ଼ ଓ ଅସୁନ୍ଦର ଛୁଆଟାଏ । ତାକୁ ଚାହିଁ ବତକ ମନକୁ ମନ କହିଲା "ଏଇଟା ତ ଅନ୍ୟମାନଙ୍କଠାରୁ

ଅନେକ ବଡ଼ ଓ ଅଲଗା । ଭୁର୍କୀ କୁକୁଡ଼ା ନା କଅଣ ? ବଳେ ଜଣେ ପଡ଼ିଯିବ ସେ ।" ଛୁଆମାନଙ୍କୁ ଧରି ସେ ପାଣି ପାଖକୁ ଚାଲିଲା । ସମସ୍ତଙ୍କ ସହିତ ଅସୁନ୍ଦର ଛୁଆ ମଧ୍ୟ ପାଣିରେ ପହଁରିଲା ।

ମାତ୍ର ସେ ବଡ଼ ଛୁଆଟା ଏତେ ଅସୁନ୍ଦର ଯେ ଅନ୍ୟମାନେ ସବୁବେଳେ ତାକୁ କାମୁଡ଼ି ଗୋଡ଼ାନ୍ତି, ତା'ଠାରୁ ଖାଦ୍ୟ ଛଡ଼େଇ ନିଅନ୍ତି । ବୟସ ବଢ଼ିବା ସହିତ ତା'ର ଜୀବନ ଅସହ୍ୟ ହୋଇ ଉଠିଲା । ଦିନେ ସେ ଗୋଟାଏ ଗାଡ଼ିଆକୁ ପଳେଇଲା । ସେଠି ଅନେକ ବଣୁଆ



ବତକ ରହନ୍ତି । ସେମାନେ ତାକୁ ଖୁବ୍ ଆଦର କଲେ । କେତେଦିନ ପରେ ଶିକାରୀମାନେ କୁକୁରଙ୍କୁ ଧରି ଗାଡ଼ିଆ ପାଖରେ ପହଞ୍ଚିଲେ । ବତକଙ୍କ ମଧ୍ୟରେ ଆତଙ୍କ ଖେଳିଗଲା । ଅନେକେ ଶିକାରୀଙ୍କ ହାତରେ ମଲେ । ଅସୁନ୍ଦର ବତକ ଛୁଆ ଏତେ ଡରି ଯାଇଥିଲା ଯେ ସାରାଦିନ ଗୋଟାଏ ବୁଦା ତଳେ ଲୁଚି ରହିଲା ।

ସକାଳ ହେବା ମାତ୍ରେ ସେ ଯଥାଶୀଘ୍ର ଗାଡ଼ିଆ ଛାଡ଼ିଲା । ତାକୁ ଖୁବ୍ ଭୋକ ଲାଗୁଥାଏ । ଦେଖିଲା, ପାଖରେ ଗୋଟିଏ କୁଡ଼ିଆ । କୁଡ଼ିଆ ଦୁଆର ଅଳ୍ପ ଖୋଲା ଅଛି ଦେଖି ସେ ଭିତରକୁ ପଶିଗଲା । ସେ କୁଡ଼ିଆ

ଗୋଟିଏ ବୁଢ଼ୀର । ପରିବାର ଭିତରେ ବୁଢ଼ୀର ଗୁଡ଼ିଏ କୁକୁଡ଼ା ଆଉ ବିରାଡ଼ିଟି । ତାକୁ ଦେଖି ବୁଢ଼ୀ ଖୁସି ହେବା ପରି ଲାଗିଲା । ସଙ୍ଗେ ସଙ୍ଗେ ଛୁଆ ବତକକୁ କିଛି ଖାଇବାକୁ ଦେଲା । ଜାଗାଟା ମନ୍ଦ ନୁହେଁ ଦେଖି ବତକ ବୁଢ଼ୀ କୁଡ଼ିଆରେ ରହିଗଲା ।



କିଛି ଦିନ ପରେ ଥଣ୍ଡା ପାଣିରେ ପହଁରିବାକୁ ବତକ ଛୁଆର ମନ ଡାକିଲା । ସେ କୁକୁଡ଼ା ଓ ବିରାଡ଼ିକୁ ଏ କଥା କହିଲା । ସେମାନେ ପରସ୍ପରକୁ ଚାହିଁା-ଚାହିଁ ହୋଇ ଆଖି ମିଟିକା ମାରିଲେ । କହିଲେ, "ଏମିତିକା କଥା ତ ଆମେ କାନ ଉଠିଲା ଦିନୁ ଶୁଣି ନାହୁଁ । ତୋ ମୁଣ୍ଡ ଖରାପ ।"

ଦିନେ ଘରରୁ କେହି ତାକୁ ନ ଦେଖୁଥିବା ବେଳେ ବତକ କବାଟ ଫାଙ୍କରେ ଧୀରେ ପଦାକୁ ଚାଲିଗଲା । ନଈ ପୋଖରୀ ଖୋଜି ଚାରିଆଡ଼କୁ ଚାହିଁଲା । ଦି ଡେଣାକୁ ଝାଡ଼ିଲା । ତା'ର ଡେଣା କେତେ ଶକ୍ତ । ସେ ଆଶ୍ଚର୍ଯ୍ୟ ହୋଇଗଲା । ଆକାଶରେ କେତୋଟି ସୁନ୍ଦର ପକ୍ଷୀ ଉଡ଼ି ଯାଉଥିଲେ । ସେମାନଙ୍କ ସାଙ୍ଗରେ ଯିବାକୁ ତା ମନ ବ୍ୟାକୁଳ ହୋଇ ଉଠିଲା । ସେମାନେ ରାଜହଂସ । ସାନ ବତକକୁ କିନ୍ତୁ ତାହା ଜଣା ନ ଥିଲା । ସେ କେବଳ ଜାଣିଥିଲା ଯେ ପୂର୍ବରୁ ଅନ୍ୟ କୌଣସି ପକ୍ଷୀଙ୍କ ପ୍ରତି ତା'ର ଏତେ ଗଭୀର ଆକର୍ଷଣ ଜାତ ହୋଇ ନ ଥିଲା । ସେ ଆଉଥରେ ଡେଣା ଝାଡ଼ିଲା ଓ କ'ଣ ଘଟୁଛି ବୁଝିବା ପୂର୍ବରୁ ଦେଖିଲା ସେ ଉଡ଼ୁଛି ।

ଉଡ଼ି ଉଡ଼ି ସେ ଗୋଟାଏ ବଡ଼ ପୋଖରୀରେ ଓହ୍ଲାଇଲା । ସେ ପୋଖରୀରେ ଧଳା ଧଳା ସୁନ୍ଦର ପକ୍ଷୀମାନେ ପହଁରୁଥିଲେ । ସେମାନେ ବତକଙ୍କଠାରୁ ତେର ବଡ଼ ଓ ସେମାନଙ୍କ ବେକ ବେଶ୍ ଲମ୍ବା । ସାନ ବତକ ଭାବୁଥାଏ ସେମାନେ ନିଶ୍ଚୟ ତାକୁ ଖୁମ୍ପିବେ,

ହଇରାଣ କରିବେ । ମାତ୍ର ସମସ୍ତଙ୍କଠାରେ ଖୁସିର ଭାବ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା ।



କୂଳରେ ଛୋଟ ପିଲାମାନେ ତାଳିମାରି ପାଟି କରୁଥାନ୍ତି, "ହୋ:ଏଠି ନୂଆ ରାଜହଂସ ଆସିଛି ।"



# ନାଇଟିଂଗେଲ

ଅତି ପ୍ରାଚୀନ କାଳର କଥା । ସେତେବେଳେ ଚୀନ୍ ଦେଶର ସମ୍ରାଟଙ୍କର ଗୋଟିଏ ଅପୂର୍ବ ସୁନ୍ଦର ପ୍ରାସାଦ ଥାଏ । ସମୁଦାୟ ପ୍ରାସାଦଟି ଝକ୍‌ଝକ ଓ ଧୋବ ଫର୍‌ଫର୍ ପୋର୍ସିଲିନ୍‌ରେ ଗଢ଼ା । ଏହା ଏଡ଼େ ସୂକ୍ଷ୍ମ ଯେ କାଳେ ଭାଙ୍ଗିଯିବ ସେଇ ଭୟରେ ଲୋକେ ତାକୁ ଛୁଅନ୍ତି ନାହିଁ । ପ୍ରାସାଦକୁ ଲାଗି ସ୍ୱର୍ଗର ନନ୍ଦନକାନନ ପରି ବଗିଚା । ସେ ବଗିଚାରେ ନାନା ଜାତିର ସୁନ୍ଦର ଫୁଲ ଫୁଟେ । ବଗିଚାଟି ଏଡ଼େ ବଡ଼ ଯେ ତାହା



କେଉଁଠି ସରିଛି ସେ କଥା ମାଳୀମାନଙ୍କୁ ମଧ୍ୟ ଜଣା ନ ଥାଏ । ତେବେ ଲୋକଆମାନେ କହନ୍ତି, ବଗିଚା ଯେଉଁଠି ସରିଛି, ସେଇଠା'ରୁ ଗୋଟିଏ ଜଙ୍ଗଲ ଆରମ୍ଭ । ସେ ଜଙ୍ଗଲ ସମୁଦ୍ର ପର୍ଯ୍ୟନ୍ତ ଲମ୍ବିଛି । ଜଙ୍ଗଲରେ ଗୋଟିଏ ନାଇଟିଂଗେଲ୍ ରହେ । ସବୁଦିନେ ରାତିରେ ଲୋକଆମାନେ ତା'ର ମଧୁର ଗୀତ ଶୁଣନ୍ତି ।

ଦୂରରୁ ବିଭିନ୍ନ ସ୍ଥାନରୁ ବିଦେଶୀମାନେ ଚୀନ୍ ଭ୍ରମଣରେ ଆସନ୍ତି । ଫେରିଗଲା ପରେ କେତେକ ଚୀନ୍ ଦେଶ ସମ୍ବନ୍ଧରେ ବହି ଲେଖନ୍ତି ।

ଚୀନ୍‌ର ଦର୍ଶନୀୟ ସ୍ଥାନ ଓ ସୁନ୍ଦର ଉଦ୍ୟାନର ବର୍ଣ୍ଣନା ଏଇସବୁ ଭ୍ରମଣ ପୁସ୍ତକରେ ଦେଖିବାକୁ ମିଳେ । ବିଦେଶୀ ଲେଖକମାନେ ସମସ୍ୱରରେ ଗୋଟିଏ କଥା କହନ୍ତି । ସେମାନେ କହନ୍ତି, ନାଇଟିଂଗେଲ୍‌ଠାରୁ ବଳି ସୁନ୍ଦର ପଦାର୍ଥ ଆଉ ଚୀନ୍‌ରେ ନାହିଁ ।

ଦିନେ ବିଦେଶୀ ଭ୍ରମଣକାରୀ ଜଣେ ଲେଖିଥିବା ବହି ଖଣ୍ଡେ ସମ୍ରାଟଙ୍କ ଦୃଷ୍ଟିରେ ପଡ଼ିଲା । ନିଜ ରାଜ୍ୟର ପ୍ରଶଂସା ପଢ଼ି ସେ ଖୁସି ହୋଇଗଲେ । କିନ୍ତୁ ବହିରୁ ନାଇଟିଂଗେଲ୍‌ର ଉଚ୍ଛ୍ୱସିତ ପ୍ରଶଂସା ପଢ଼ି ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ଭାବିଲେ, "ମୋ ରାଜ୍ୟରେ ଏପରି ଅଦ୍ଭୁତ ପକ୍ଷୀ ଅଛି ? ତା ବିଷୟ ମୋତେ କେହି କେବେ କହି ନାହାନ୍ତି !"

ସମ୍ରାଟ ମହାମନ୍ତ୍ରୀଙ୍କୁ ଡକାଇ କହିଲେ, "ଏ ବହିରେ ଗୋଟିଏ ଆଶ୍ଚର୍ଯ୍ୟ ପକ୍ଷୀ କଥା ଲେଖାଅଛି । ତାକୁ ନାଇଟିଂଗେଲ୍ କହନ୍ତି । କୁହାଯାଉଛି ଆମର ଏ ବିଶାଳ ଦେଶରେ ତା'ଠାରୁ ସୁନ୍ଦର ବସ୍ତୁ କିଛି ନାହିଁ । ମୋତେ ତା ବିଷୟରେ କିଛି କୁହାଯାଇନି କାହିଁକି ?"

"ମୁଁ ଏପରି ପକ୍ଷୀ କଥା ଶ୍ରୀମୁଖରୁ ପ୍ରଥମ କରି ଶୁଣୁଛି ।" ମହାମନ୍ତ୍ରୀ କହିଲେ, "ତାକୁ ତ କେହି ଦରବାରକୁ ଆଣିନାହାନ୍ତି ।"

"ଆଜି ସନ୍ଧ୍ୟାବେଳେ ପକ୍ଷୀକୁ ମୋ ପାଖରେ ପହଞ୍ଚାଅ ।"

ମାତ୍ର ନାଇଟିଂଗେଲ୍ ରହେ କେଉଁଠି ? ପାତ୍ରମନ୍ତ୍ରୀଙ୍କ ଭିତରେ ଚହଳ ପଡ଼ିଗଲା । ସେମାନେ ନଅରସାରା ଜସରପସର ହୋଇ ଯାହାକୁ ଭେଟିଲେ ନାଇଟିଂଗେଲ କଥା ପଚାରିଲେ । ମାତ୍ର ତାକୁ ଦେଖିଛି କିଏ ଯେ ଖବର ଦେବ ? କଥାଟା ସମ୍ରାଟଙ୍କ କାନକୁ ଗଲା । ସେ ଗମ୍ଭୀର ହୋଇ କହିଲେ, "ଯଦି ସନ୍ଧ୍ୟା ସୁଦ୍ଧା ପକ୍ଷୀ ମୋ ପାଖରେ ନ ପହଞ୍ଚେ ତେବେ ଦରବାରର ସବୁ ସଦସ୍ୟଙ୍କ ଉପରେ ଛାଟି ଚଲେଇ ଦିଆଯିବ ।"

ଏ କଥା ଶୁଣି ସମସ୍ତେ ବିକଳରେ ଏଣେତେଣେ ଧାଇଁଲେ । ମହାମନ୍ତ୍ରୀ ମହାବ୍ୟସ୍ତ । ଦରବାରର ଅଧେ ଲୋକ ତାଙ୍କ ପଛରେ

ଗୋଡ଼ଉ ଥାଆନ୍ତି । ହାଣ୍ଡି ଟେକିବା କଥାଟା ତ ମୋଟେ ଭାବ ହେଉ ନ ଥାଏ । ଶେଷରେ ବୋଷେଇଶାଳର ଗୋଟିଏ ଗରିବ ଝିଅ କହିଲା, "ମୁଁ ନାଇଟିଂଗେଲ୍‌କୁ ଭଲ ଭାବରେ ଜାଣେ ।"

କଥାପଦକ ଶୁଣି ମହାମନ୍ତ୍ରୀଙ୍କ ପିଣ୍ଡରେ ପ୍ରାଣ ପଶିଲା । କହିଲେ, "ଯଦି ତୁ ଆମକୁ ପକ୍ଷୀ ପାଖକୁ ନେଇପାରୁ ତେବେ ଆଜିଠାରୁ ତୋର ପଦୋନ୍ନତି ହେବ । ତୁ ମଣିମାଙ୍କୁ ପରଷିବା ଦାୟିତ୍ୱରେ ରହିବୁ ।"

ଝିଅଟି ଆଗେ ଆଗେ ଜଙ୍ଗଲ ଆଡ଼େ ଚାଲିଲା । ସମସ୍ତଙ୍କୁ ନାଇଟିଂଗେଲ୍ ରହୁଥିବା ଗଛମୂଳେ ପହଞ୍ଚାଇ ଦେଇ କହିଲା, "ହେଇ ! ସେ ସେଇଠି ବସିଛି ।"



"କ'ଣ !" ମହାମନ୍ତ୍ରୀ ଚମକି ପଡ଼ିଲେ, "ଏଡ଼ିକି ଛୋଟିଆ ଚଢ଼େଇଟିଏ !" ନାଇଟିଂଗେଲ, ଏମିତିକା ଗୋଟିଏ ଛୋଟ, ସାଧାରଣ ଚଢ଼େଇଟିଏ ହୋଇଥିବ ବୋଲି ସେ କଳ୍ପନା କରି ନ ଥିଲେ । ଯାହା

ହେଉ ମୁହଁ ଖୋଲି କହିଲେ, "ଆରେ ଚଢ଼େଇ ! ଆଜ ସନ୍ଧ୍ୟାରେ ଦରବାରରେ ଉତ୍ସବ ହେଉଛି । ତୁମକୁ ନିମନ୍ତ୍ରଣ ରହିଲା । ତୁମର ସାଙ୍ଗୀତଜ୍ଞା କଣ୍ଠରୁ ଗୀତ ଶୁଣି ସମ୍ରାଟ ପୁରସ୍କାର ଦେବେ ।"

"ବଣରେ ମୋ ଗୀତ ସବୁଠାରୁ ମଧୁର ।" ଏକଥା କହିଲେ ମଧ୍ୟ ନାଇଟିଂଗେଲ୍ ସେମାନଙ୍କ ସାଙ୍ଗରେ ଚାଲିଲା ।

ରଙ୍ଗ ବେରଙ୍ଗର ଆଲୋକମାଳାରେ ସଜା ହୋଇ ଧବଳମୟ ନଅର ସ୍ୱପ୍ନପୁରୀ ପରି ଦିଶୁଥାଏ । ବାରଣ୍ଡାରେ ଧାଡ଼ି ଧାଡ଼ି ଫୁଲଗଛ ସଜା ହୋଇ ଥାଆନ୍ତି । ସୁଶୋଭିତ ହଲ୍ ମଝିରେ ନାଇଟିଂଗେଲ୍ ବସିବା ପାଇଁ ସୁନାର ଗୋଟିଏ ଛଡ଼ି ଝୁଲୁଥାଏ । ସଭାସଦ୍‌ଗଣ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି । ନାଇଟିଂଗେଲ୍‌ର ମଧୁର ଗାନ ଶୁଣି ସମ୍ରାଟଙ୍କ ଆଖିରେ ଲୁହ ଆସିଗଲା । ବେଳକୁ ବେଳ ତା'ର ସ୍ୱର ଆହୁରି ମିଠା ହେଲା । ସମ୍ରାଟଙ୍କ ଆଖିରୁ ଧାର ଧାର ଲୁହ ଗଡ଼ିଲା ।

ଆନନ୍ଦରେ ନିଜ ବେକରୁ ରତ୍ନମାଳ କାଢ଼ି ନାଇଟିଂଗେଲ୍‌କୁ ପିନ୍ଧାଇ ଦେବାକୁ ସମ୍ରାଟ ଘୋଷଣା କଲେ । ଏ ପୁରସ୍କାର ଗ୍ରହଣ କରିବାକୁ ନାଇଟିଂଗେଲ୍ କିନ୍ତୁ ନମ୍ରତାର ସହିତ ଅସମ୍ମତି ଜଣାଇଲା । ସମ୍ରାଟ ଯେ ତାକୁ ଯଥେଷ୍ଟ ପୁରସ୍କାର ଦେଇ ସାରିଛନ୍ତି । "ଜଣେ ସମ୍ରାଟଙ୍କ ଆଖିରେ ମୁଁ ଲୁହ ଦେଖିଲି" ନାଇଟିଂଗେଲ କହିଲା, "ସେତିକି ମୋ ପାଇଁ ଅମୂଲ୍ୟ ପୁରସ୍କାର ।"

ସାରା ରାଜ୍ୟରେ ନାଇଟିଂଗେଲ୍‌ର ପ୍ରଶଂସା ବ୍ୟାପିଗଲା । ସମସ୍ତଙ୍କ ତୁଣ୍ଡରେ ତା'ରି କଥା । ନାଇଟିଂଗେଲ୍ ପାଇଁ ସୁନା ପଞ୍ଜୁରୀ ହେଲା । କେବଳ ପ୍ରତିଦିନ ତାକୁ ଉଡ଼ିବାକୁ ଛଡ଼ାଯାଏ । ଅବଶ୍ୟ ତା'ର ଦେଖାରୁହାଁ ପାଇଁ ନିଯୁକ୍ତ ଦାସୀମାନେ ପକ୍ଷୀ ଗୋଡ଼ରେ ରେଶମର ଡୋର ବାନ୍ଧି ତାକୁ ଉଡ଼ିବାକୁ ଛାଡ଼ନ୍ତି ।

ଦିନେ ସମ୍ରାଟଙ୍କ ପାଖକୁ ଜାପାନ ଦେଶରୁ ଗୋଟିଏ ସୁନା ଚଢ଼େଇ ଉପହାର ଆସିଲା । ତା ଦେହରେ ହୀରା, ନୀଳା, ମୋତି ମାଣିକ୍ୟ

ଝଞ୍ଜାଯାଇଥାଏ । ଘଣ୍ଟାର ଗୁବ ପର ସୁନା ଚଢ଼େଇର ଗୋଟିଏ ଗୁବ ଥାଏ । ଗୁବ ଦେଲେ ସେ ଗାଏ । ତା'ର ଗୀତ ଖୁବ୍ ମିଠା । ସମସ୍ତେ କହିଲେ, ନାଇଟିଂଗେଲ୍‌ଠାରୁ ସୁନା ଚଢ଼େଇର ସ୍ୱର ଅଧିକ ମଧୁର । କେବଳ ଜଣେ ବୁଢ଼ା କେଉଟ କହିଲା ଯେ ସୁବର୍ଣ୍ଣ ପକ୍ଷୀର ଗୀତ ଖୁବ୍ ଭଲ ସତ, ହେଲେ ସେଥିରେ କ'ଣ ଟିକିଏ ଅଭାବ ରହିଛି । କି ଅଭାବ ସେ କଥା କହିପାରିବ ନାହିଁ ।

ସମ୍ରାଟ ଓ ତାଙ୍କର ପାରିଷଦବର୍ଗ ସୁନା ଚଢ଼େଇର ପ୍ରେମରେ ପଡ଼ିଗଲେ । ନାଇଟିଂଗେଲ୍‌କୁ ଛାଡ଼ି ଦିଆଗଲା । ଦିନେ ସନ୍ଧ୍ୟାବେଳେ ସୁନା ଚଢ଼େଇ ମଧୁର କଣ୍ଠରେ ଗାଉଥାଏ । ହଠାତ୍ ଗୋଟାଏ କ'ଣ 'କର୍‌କର୍' ଆଓ୍ୱାଜ ଆସିଲା । ସେଇଠୁ ଗୀତ ବନ୍ଦ । ସମ୍ରାଟ ସଙ୍ଗେ ସଙ୍ଗେ ରାଜବୈଦ୍ୟଙ୍କୁ ଡକାଇଲେ । ବୈଦ୍ୟ ବା କ'ଣ କରିବ ? ଜଣେ ଘଣ୍ଟା ମରାମତିବାଲାକୁ ଡକାଗଲା । ସେ ଅନେକ ଚେଷ୍ଟା କଲା ପରେ ଚଢ଼େଇ ଗାଇଲା । ମାତ୍ର କାରିଗର ସତର୍କ କରିଦେଇଗଲା ଯେ ଏଣିକି ଆଉ ସୁନା ଚଢ଼େଇ ଆଉ ପୂର୍ବ ପରି ଯେତେବେଳେ ପାରେ ସେତେବେଳେ ଗାଇବା ମନା । ତାକୁ ଖୁବ୍ ସାବଧାନରେ ରଖିବାକୁ ହେବ । ସେ ବର୍ଷକୁ ଥରକରୁ ଅଧିକ ଗାଇବା ବିପଦଜନକ । ଏ କଥା ଶୁଣି ସମସ୍ତେ ବଡ଼ ଦୁଃଖ କଲେ ।

ପାଞ୍ଚବର୍ଷ ବିତିଗଲା । ଥରେ ସମ୍ରାଟ ବେମାର ପଡ଼ିଲେ । ଦିନ କେଇଟାରେ ତାଙ୍କର ଅବସ୍ଥା ସାଙ୍ଘାତିକ ହୋଇଗଲା । ଦେଶକୁ ଗୋଟାଏ ବଡ଼ ବିପଦ ଘନେଇ ଆସିଲା । ଅନେକେ ଭାବିଲେ ସମ୍ରାଟ ଏଥର ମରିଯିବେ । କେତେକ ଯାଇ ତାଙ୍କ ଉତ୍ତରାଧିକାରୀଙ୍କୁ ବଧେଇ ଜଣେଇ ଆସିଲେ । ଶଯ୍ୟାଶାୟୀ ହେଲେ ମଧ୍ୟ ସମ୍ରାଟ ହୋସ୍‌ରେ ଥାଆନ୍ତି । ଦିନେ ରାତିରେ ଗୋଟିଏ ଘଟଣା ଘଟିଲା । ଜହ୍ନରାତି । ଝରକା ବାଟେ ଜହ୍ନ, କିରଣ ଆସି ସୁନା ଚଢ଼େଇ ଉପରେ ପଡ଼ୁଥାଏ । ସମ୍ରାଟଙ୍କୁ ଲାଗୁଥାଏ, ଯେପରି ଛାତିରେ ଗୋଟାଏ ପଥର ଲଦା ହୋଇଛି । ବଡ଼ କଷ୍ଟରେ ସେ ନିଶ୍ୱାସ ନେଉଥାଆନ୍ତି । ତାଙ୍କୁ ଦିଶିଲା, ଅଦୂରରେ ଯମରାଜା ଦଣ୍ଡାୟମାନ । ଚଳିଙ୍କ ଶଯ୍ୟାପାଖେ ଅନେକ ଅଦ୍ଭୁତ ଅପରିଚିତ ମୁହଁ । କେତେକ ମୁହଁ

ଅତି କଦାକାର ଏବଂ କେତେକ ବେଶ୍ କମନୀୟ ଓ ଭଦ୍ର । ମୁହଁଗୁଡ଼ିକ ସମ୍ରାଟଙ୍କର ଭଲ ଓ ମନ୍ଦ କର୍ମ ।

"ଗୀତ ଗାଅ" ସୁନା ଚଢ଼େଇକୁ ସମ୍ରାଟ କହୁଲେ, "ଓଃ ଏ ଭୟଙ୍କର ମୁହଁମାନଙ୍କୁ ତଡ଼ ଦେ ।" କେହି ରବ ନ ଦେଲେ ତ ସୁନା ଚଢ଼େଇ ଗାଇ ପାରିବ ନାହିଁ । ଏତିକିବେଳେ ଝରକାବାଟେ ନାଇଟିଂଗେଲ୍‌ର ମଧୁର ସ୍ୱର ଭାସି ଆସିଲା । ସମ୍ରାଟଙ୍କୁ ଗୀତ ଶୁଣାଇବାକୁ ସେ ଉଡ଼ି ଆସିଥାଏ । ଯମରାଜା ବାହାର ନ ଯିବା ପର୍ଯ୍ୟନ୍ତ ତା'ର ଗୀତ ବନ୍ଦ ହେଲା ନାହିଁ । ସମ୍ରାଟ ବେଶ୍ ସୁସ୍ଥ ଅନୁଭବ କଲେ ଓ ବିଛଣାରୁ ଉଠି ଆସି ଘର ଭିତରେ କିଛି ସମୟ ବୁଲିଲେ । ଭୋରୁ ମୃତ ସମ୍ରାଟଙ୍କୁ ଦେଖିବେ ବୋଲି ଆଶଙ୍କା କରି ଆସିଥିବା ପାରିଷଦମାନଙ୍କୁ ସମ୍ରାଟ 'ସୁପ୍ରଭାତ' ଜଣାଇ ସ୍ୱାଗତ କଲେ ।



# ତୁଷାର କନ୍ୟା

ଆଲ୍‌ପସ୍ ପର୍ବତ ଶ୍ରେଣୀର ଗୋଟିଏ ମନୋରମ ଉପତ୍ୟକାରେ ଗୋଟିଏ ବାଳକ ରହୁଥାଏ । ତା'ର ନାମ ରୁଡ଼ି । ଆଲପ୍‌ସ ତୁଷାର କନ୍ୟାର ବାସସ୍ଥଳୀ । ତାଙ୍କ ବିଷୟରେ ବୁଢ଼ାମାନେ ଚୁପ୍‌ଚୁପ୍ କଥାବାର୍ତ୍ତା ହୁଅନ୍ତି ; କାରଣ ମଣିଷଙ୍କୁ ତୁଷାରକନ୍ୟା ଭଲ ପାଆନ୍ତି ନାହିଁ । ପର୍ବତର ଗର୍ତ୍ତ ଓ ଶଙ୍ଗରେ ଲୁଚି ସେ ମଣିଷଙ୍କୁ ଛକନ୍ତି । ତାଙ୍କର ବିରାଟ ପ୍ରାସାଦମାନ ସୂର୍ଯ୍ୟ କରଣରେ ଚକ୍‌ଚକ୍ ଦିଶୁଥାଏ । ପାହାଡ଼ ଉପରେ ସେ ଅନେକ ଉଚ୍ଚର ବରଫ ଜମେଇ ଦିଅନ୍ତି । ସମୟେ ସମୟେ ଏହି ସ୍ତୂପାକୃତିର ବରଫ ଗିରିପଥ ଆଡ଼କୁ ଖସି ଖସି ଆସେ । ତାହା ଦେଖି ଲୋକମାନେ ଭୟରେ ଶେତା ପଡଯାଆନ୍ତି । କହନ୍ତି ହିମସ୍ତୂପ ଖସୁଛି ।

କିନ୍ତୁ ତୁଷାରକନ୍ୟାଙ୍କୁ ରୁଡ଼ିର ଡର ନ ଥାଏ । ପାହାଡ଼ ହରିଣ ପରି ସେ ଅନାୟାସରେ ପାହାଡ଼ ଉପରେ ଖେଳେ ବୁଲେ । ଶିକାରୀଙ୍କ-ଠାରୁ ରୁଡ଼ିକୁ ପାହାଡ଼ ହରିଣମାନେ ବେଶୀ ଡରନ୍ତି । କାରଣ ରୁଡ଼ିର ଲକ୍ଷ୍ୟ ଅବ୍ୟର୍ଥ । ପୁଣି ଦୁର୍ଗମ ବନ୍ଧୁର ପାହାଡ଼ ଉପରେ ଚରୁଥିବା ପାହାଡ଼ ହରିଣଙ୍କର ଯେତେ ପାଖକୁ ସେ ନିଃଶବ୍ଦରେ ଚାଲିଯାଇପାରେ, କୌଣସି ଶିକାରୀ ପକ୍ଷରେ ତାହା ସମ୍ଭବ ନୁହେଁ ।

ଯେତେବେଳେ ରୁଡ଼ି ଖୁବ୍ ଛୋଟ ସେତେବେଳେ ତା'ର ମା ତାକୁ କାଖେଇ ରୁଡ଼ିର ମାମୁଁ ଘରକୁ ଯାଉଥିଲା । ଗୋଟିଏ ପାହାଡ଼ ଟପିଲେ ରୁଡ଼ିର ମାମୁଁ ଘର । ଅନେକଦିନ ଧରି ବରଫ ପଡୁଥିବାରୁ ବାଟ ଅବାଟ ବାରି ହେଉ ନ ଥାଏ । ବରଫ ଖସିବାରୁ ରୁଡ଼ିର ମା ଗୋଟିଏ ଗାତରେ ପଡିଗଲା । ଏ ଦୁର୍ଘଟଣାରେ ରୁଡ଼ିର ମା ମରିଗଲା ; କିନ୍ତୁ ରୁଡ଼ିର କିଛି ହେଲାନାହିଁ ।

ରୁଡ଼ିର ବୟସ ବଢ଼ିବା ସହିତ ସବୁ ପାହାଡ଼ି ଝିଅଙ୍କର ଆଖି ତା ଉପରେ ପଡ଼ିଲା । ହେଲେ ସେ କେବଳ ଜଣକୁ ଭଲ ପାଉଥାଏ । ସେ

ଝିଅର ନାଁ ବବିତା । ଦିନେ ବବିତାକୁ ଭେଟି ରୁଡ଼ି ତା ଆଗରେ ବାହାଘର ପ୍ରସ୍ତାବ ବାଢ଼ିଲା । ଏଡ଼େ ସୁନ୍ଦର ଓ ସାହସୀ ଯୁବକର ପ୍ରସ୍ତାବକୁ ବବିତା ନାକଚ କରି ପାରିଲା ନାହିଁ । ଲାଜେଇ ଯାଇ ସମ୍ମତି ଜଣାଇଲା । ଦୁହେଁ ବବିତାର ବାପା ପାଖକୁ ଗଲେ । ସେମାନଙ୍କର ଇଚ୍ଛା ଜାଣି ବବିତାର ବାପା ମଧ୍ୟ ଖୁସି ହେଲା ।

ରାତିରେ ଖାଇସାରି ବବିତାର ବାପା ଢୁମେଇ ପଡ଼ିଥାଏ । ବବିତା ଓ ରୁଡ଼ି ପାଖ ଦ୍ୱୀପକୁ ବୁଲିଯିବା ଉଦ୍ଦେଶ୍ୟରେ ହ୍ରଦ କୂଳରେ ପହଞ୍ଚିଲେ । ଦୁହେଁ ଯାକ ଗୋଟିଏ ଡଙ୍ଗାରେ ବସି ଆହୁଲା ମାରି ଦ୍ୱୀପ ପାଖକୁ ଗଲେ । ସେମାନେ କୂଳରେ ବସି ଗପ କରୁଥାନ୍ତି । ହଠାତ୍ ଖଣ୍ଡିଆ ଭୂତ ପରି ବତାସଟିଏ ଆସି ସେମାନଙ୍କ ଡଙ୍ଗା ଦଉଡ଼ିକୁ ଛିଣ୍ଡେଇ ଦେଲା । ଡଙ୍ଗାକୁ କୂଳକୁ ଆଣିବାକୁ ସଙ୍ଗେ ସଙ୍ଗେ ରୁଡ଼ି ହ୍ରଦ ଭିତରକୁ ପଶିଗଲା । ଡଙ୍ଗା ପାଖକୁ ସେ ପହଁରି ଯାଉଛି, ତୁଷାରକନ୍ୟା ତାକୁ ସ୍ପର୍ଶ କଲେ । ସେ ସ୍ପର୍ଶରେ ତା'ର ଶରୀର ଅସାଡ଼ ହୋଇଗଲା । ପହଁରି ନପାରି ରୁଡ଼ି ବୁଡ଼ିବୁଡ଼ି ହେଲା । କୂଳରେ ବବିତା ଅପେକ୍ଷା କରିଥାଏ । ଜହ୍ନର ଆଲୁଅରେ ସେ ଦେଖିଲା, ରୁଡ଼ିର ମୁଣ୍ଡ ଉପରେ ଗୋଟାଏ ପାଦରେ ଛିଡ଼ା ହୋଇ ଆର ପାଦରେ ତୁଷାରକନ୍ୟା ତାକୁ ତଳକୁ ଚାପି ଦେଉଛନ୍ତି । ସେହିପରି ଭାବେ ସେମାନେ ତା ଦୃଷ୍ଟିର ସୀମା ବାହାରକୁ ଚାଲିଗଲେ ।



# ରାଜାଙ୍କର ଅଦ୍ଭୁତ ନୂଆ ପୋଷାକ

ଅନେକ ବର୍ଷ ତଳେ ଜଣେ ରାଜା ଥିଲେ । ପ୍ରତି ଘଣ୍ଟାରେ ତାଙ୍କର ଗୋଟିଏ ନୂଆ ପୋଷାକ ଦରକାର । ସୁନ୍ଦର ନୂଆ ପୋଷାକରେ ତାଙ୍କର ବଡ଼ ସଉକ୍ । ଦିନେ ରାଜଧାନୀରେ ଦୁଇଜଣ ତନ୍ତୀ ଆସି ପହଞ୍ଚିଲେ । ସୂତା କାଟିବାରେ ସେମାନଙ୍କର ଦକ୍ଷତା ଅସାଧାରଣ । ସେମାନେ ଏତେ



ସୂକ୍ଷ୍ମ ସୂତା ବୁଣି ପାରନ୍ତି ଯେ ତାହା ସହଜେ ଆଖିକୁ ଦିଶେ ନାହିଁ । ଏ ଖବର ସହରଆଡ଼େ ବ୍ୟାପିଗଲା । ଦୁଇ ଓସ୍ତାଦ୍ ବୁଣାଳୀ କହିଲେ, ଯିଏ ନିର୍ବୋଧ ବା ତା'ର ପଦରେ ରହିବାକୁ ଅଯୋଗ୍ୟ ତାକୁ ସେମାନଙ୍କର ବୁଣା ସୂତା ଆଦୌ ଦିଶିବ ନାହିଁ ।

ଖବର ପାଇ ରାଜା ଦୁଇଜଣଙ୍କୁ ଡକାଇଲେ ଓ ତାଙ୍କ ପାଇଁ ଗୋଟିଏ କାହିଁ ନ ଥିବା ସୁନ୍ଦର ପୋଷାକ ତିଆରି କରିବାକୁ ବରାଦ ଦେଲେ । ସେ ଭାବିଲେ, କର୍ମଚାରୀଙ୍କ ମଧ୍ୟରୁ ଯେଉଁମାନେ ଅଯୋଗ୍ୟ ସେମାନେ ଏଇ

ପୋଷାକ ସାହାଯ୍ୟରେ ସହଜରେ ଧରା ପଡ଼ିଯିବେ । ରାଜାଙ୍କର ଆଦେଶ ପାଇ ଦୁଇଲୋକ ତନ୍ତ ସଜାଡ଼ିଲେ ଓ ବୁଣିବା ଆରମ୍ଭ କରିଦେଲେ । ଲୋକ ଦୁଇଟି ଧୂର୍ତ୍ତ ଶଠ । ସେମାନଙ୍କର ସୂତାବୁଣା ପ୍ରକୃତରେ ବୁଣିବାର ବାହାନା । ଗୋଟାଏ ଖାଲି ତନ୍ତକୁ ଚଳେଇ ଶୂନ୍ୟ ହାତରେ ବୁଣିବା ପରି ଅଙ୍ଗଭଙ୍ଗୀ କରି ସେମାନେ ବୁଣିବାର ଅଭିନୟ କରୁଥିଲେ ।

କିଛିଦିନ ଗଲା । ପୋଷାକ ତିଆରି କପରି ଚାଲିଛି ଦେଖି ଆସିବା ପାଇଁ ରଜା ପ୍ରଧାନମନ୍ତ୍ରୀଙ୍କୁ ଡେ଼ାଇଲେ । ଦୁଇ ଠକ ବଡ଼ ବିନୟରେ ତାଙ୍କୁ ସ୍ୱାଗତ କରି ପାଖେଇ ନେଲେ । ତନ୍ତ ପାଖକୁ ଆସି ଅଧା ତିଆରି ପୋଷାକ ଦେଖିବାକୁ ଅନୁରୋଧ କଲେ । ପୋଷାକର ପରିକଳ୍ପନା, ରଙ୍ଗ ଇତ୍ୟାଦି ବିଷୟରେ ମହାମନ୍ତ୍ରୀଙ୍କ ମୂଲ୍ୟବାନ ମତାମତ ନ ଜାଣିଲେ ସେମାନେ ଆଗେଇବେ କପରି ?



"ହେ ଭଗବାନ !" ପ୍ରଧାନମନ୍ତ୍ରୀଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା,

"ମୋର ବୁଦ୍ଧିବୃତ୍ତି ଲୋପ ପାଇଲାଣି ଅଥବା ମୁଁ ପ୍ରଧାନମନ୍ତ୍ରୀ ପଦରେ ରହିବା ପାଇଁ ଅଯୋଗ୍ୟ ?"

ତାଙ୍କୁ ଚୁପ୍ ରହିବାର ଦେଖି ଦୁଇ ଠକ ଉତ୍କଣ୍ଠିତ ହୋଇ ପଚାରିଲେ, "ହଜୁର, ଆମ କାମ ମନକୁ ପାଇଲା ତ ?"

"ଆଃ ! ବଢ଼ିଆ ! ଭାରି ସୁନ୍ଦର !" ଚଷମା ଭିତରୁ ଅନେଇ ପ୍ରଧାନମନ୍ତ୍ରୀ ସମ୍ମୋହିତ ଭାବେ କହିଲେ, "ଯାହା ଦେଖୁଛି, ଚମତ୍କାର ପୋଷାକ ହେବ । ମୁଁ ରାଜାଙ୍କୁ ଜଣେଇ ଦେବି ।"

ଏହାପରେ ଦି ଠଗ ଆହୁରି ଟଙ୍କା ସୁନା ଓ ସିଲ୍କ ମଗାଇଲେ । ଯାହା ମାଗିଲେ ତତ୍କ୍ଷଣାତ୍ ମିଳିଗଲା । ସେ ସବୁକୁ ବାକ୍ସ ଭିତରେ ଲୁଚେଇ ଦେଇ ଦିହେଁ ଦିନରାତି ତନ୍ତ ପାଖରେ କାମ କରିବାର ଅଭିନୟ କରୁଥାନ୍ତି । କିନ୍ତୁ ସିଲ୍କ ସୂତା ଖଣ୍ଡେ ମଧ୍ୟ ଖର୍ଚ୍ଚ ହେଉ ନ ଥାଏ ।

ଦୁଇ ତିନିଦିନ ପରେ ରାଜା କାମ ତଦାରଖ କରିବାକୁ ଆଉ ଜଣେ ମନ୍ତ୍ରୀଙ୍କୁ ପଠାଇଲେ । ପ୍ରଧାନମନ୍ତ୍ରୀଙ୍କ କ୍ଷେତ୍ରରେ ଯାହା ଘଟିଥିଲା ତାହାର ପୁନରାବୃତ୍ତି ହେଲା । ନିରେଖି ଚାହିଁ ଚାହିଁ ମନ୍ତ୍ରୀ ମହାଶୟଙ୍କ ଆଖିରୁ ଜୁଳୁଜୁଳିଆ ପୋକ ବାହାରି ପଡ଼ିଲା । ତଥାପି ତନ୍ତରେ ସୂତାଖିଏ ଥିବାର ଦିଶିଲା ନାହିଁ । "ମୁଁ ତ ନିର୍ବୋଧ ନୁହେଁ," ସେ ମନକୁ ମନ କହିଲେ, "ତେବେ କ'ଣ ମୁଁ ମୋର ପଦରେ ରହିବା ପାଇଁ ଅନୁପଯୁକ୍ତ ? ଉଃ ! କଥାଟା ଯେ ଆଦୌ ଭାବି ହେଉନାହିଁ । ହଉ, ଏ କଥା ଆଉ ଜାଣୁଛି କିଏ ? ମୁଁ ବା କହୁଛି କାହାକୁ ?" ବୁଣା ଚାଲିଥିବା ଅଦୃଶ୍ୟ ପୋଷାକକୁ ସେ ଖୁବ୍ ପ୍ରଶଂସା କରି ଚାଲିଗଲେ ।

ସେଇ ନାହିଁ ନ ଥିବା ଅଦ୍ଭୁତ ପୋଷାକ ସହରଯାକର ଲୋକଙ୍କର ଆଲୋଚନାର ବିଷୟ ହେଲା । ଦିନେ ବୁଣା କାମ ଦେଖିବାକୁ ରାଜା ମନ ବଳାଇଲେ । ଏକ ଧ୍ୟାନରେ କାମରେ ଲାଗିପଡ଼ିଥିବା ଦୁଇ ଓସ୍ତାଦ୍ ଠକଙ୍କର ତନ୍ତକୁ ଲାଗିଯାଇ ରାଜା ଦେଖିଲେ, ତନ୍ତ ବିଲ୍‌କୁଲ୍ ଖାଲି ! ଭାବିଲେ, "ଏ କ'ଣ ! ମତେ କିଛି ଦିଶୁନି ! ବଡ଼ ସାଙ୍ଘାତିକ

କଥା । ମୁଁ କ'ଣ ବୋକା । ଆଜ କ'ଣ ମୁଁ ରାଜା ହେବାକୁ ଅଯୋଗ୍ୟ ? କି ଭୟଙ୍କର !" ମୁହଁଖୋଲି କହିଲେ, "ସତରେ ଖୁବ୍ ସୁନ୍ଦର ହୋଇଛି । ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ।"

ରାଜାଙ୍କ ସହିତ ଯେତେ ଲୋକ ଆସିଥିଲେ ସମସ୍ତେ ଥକାଗଲେ । ତଥାପି ଶୂନ୍ୟ ତନ୍ତ ଛଡ଼ା ଆଉ କିଛି ଦୃଶ୍ୟ ହେଲା ନାହିଁ । ରାଜାଙ୍କ ତୁଣ୍ଡରୁ କଥା ସରୁ ନ ସରୁଣୁ ସମସ୍ତେ ସମସ୍ୱରରେ କହିଲେ, "ଅପୂର୍ବ ପୋଷାକ ।" ଆଗକୁ ଗୋଟାଏ ବଡ଼ ଉତ୍ସବ ଥାଏ । ସେଦିନ ମହିମା ଏଇ ନୂଆ ପୋଷାକ ପିନ୍ଧନ୍ତୁ ବୋଲି ସମସ୍ତେ ଅନୁରୋଧ ଜଣାଇଲେ ।

ଉତ୍ସବ ପୂର୍ବଦିନ ରାତିରେ ଦୁଇ ଠକଙ୍କୁ ନିଦ ନାହିଁ । ଷୋଳଟି ଲଣ୍ଠନ ଜଳାଇ ସାରାରାତି ସେମାନେ କାର୍ଯ୍ୟବ୍ୟସ୍ତ ରହିଲେ । ନଗରବାସୀ ସେମାନଙ୍କର ଅକ୍ଳାନ୍ତ ପରିଶ୍ରମ ଦେଖି ଅବାକ୍ । ତନ୍ତରୁ ଲୁଗା ଖସେଇବାର ଅଭିନୟ କରି ଦୁହେଁ ନ ଥିବା ପୋଷାକ କାଢ଼ି ଆଣିଲେ । ଶୂନ୍ୟରେ କଇଁଚି ଚଳେଇ ଖୁବ୍ ସାବଧାନରେ ତାକୁ କାଟିଲେ ଓ ସୂତା ନ ଥିବା ଛୁଞ୍ଚରେ ତାକୁ ସିଲେଇ କଲେ । ଅନେକ ସମୟ ପରେ ଦୁହେଁ ଘୋଷଣା କଲେ, "ବର୍ତ୍ତମାନ ପୋଷାକ ପ୍ରସ୍ତୁତ ।"

ପୋଷାକ ଦେଖିବା ପାଇଁ ପାତ୍ରମନ୍ତ୍ରୀ ଓ ବରିଷ୍ଠ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଗହଣରେ ମହିମା ବିଜେ କଲେ । ହାତରେ ପୋଷାକ ଧରିବାର ଭଙ୍ଗୀ କରି ଦୁହେଁ ପ୍ୟାଣ୍ଟ, କୋଟ୍, ମ୍ୟାଣ୍ଟେଲ ପ୍ରଭୃତି ଦେଖାଇ ଦେଲେ । ଠକମାନେ ବିନୀତ ଭାବେ କହିଲେ, "ବୁଢ଼ିଆଣୀ ସୂତାଠାରୁ ସୂକ୍ଷ୍ମ ଓ ହାଲୁକା ସୂତାରେ ଏ ପୋଷାକ ତିଆରି ହୋଇଛି । ତେଣୁ ପିନ୍ଧିଲେ ଲାଗିବ ଦେହରେ ଯେମିତି କିଛି ନାହିଁ । ତାହା ହିଁ ଏ ପୋଷାକର ବାହାଦୁରି । ରାଜାଙ୍କୁ ଯଥୋଚିତ ସମ୍ମାନ ଦେଖାଇ ସେମାନେ କହିଲେ, "ମହିମା ଯଦି ପୋଷାକ ଉତାରିବାକୁ ଅନୁମତି ଦିଅନ୍ତେ ତେବେ ଆମେ ଏଇ ବଡ଼ ଦର୍ପଣ ସମ୍ମୁଖରେ ମହିମାଙ୍କୁ ନୂଆ ପୋଷାକ ପିନ୍ଧାଇ ଦିଅନ୍ତୁ ।"

ରାଜା ପୋଷାକ ଖୋଲି ପକାଇଲେ । ଶଠ ଦୁହେଁ ବଡ଼ ଯତ୍ନରେ ତାଙ୍କୁ ନୂଆ ପୋଷାକ ପିନ୍ଧାଉଥିବାବେଳେ ରାଜା ଏପଟ ସେପଟ ବୁଲି

ଦର୍ପଣରେ ନିଜକୁ ଦେଖୁଥାନ୍ତି । ପିନ୍ଧା ସରିଲା ପରେ ସମବେତ ଗଣ୍ୟମାନ୍ୟ ବ୍ୟକ୍ତିମାନେ ଉଲ୍ଲସିତ ସ୍ୱରରେ କହିଲେ, "ଚମତ୍କାର ।" ପୋଷାକର କଟିଂଗ୍, ଫିଟିଂଗ୍, ରଙ୍ଗ ଢଙ୍ଗକୁ ସମସ୍ତେ ଉଚ୍ଛ୍ୱସିତ ପ୍ରଶଂସା କଲେ ।

ପ୍ରଧାନମନ୍ତ୍ରୀ ରାଜାଙ୍କୁ ଅଭିବାଦନ କରି ଜଣାଇଲେ, "ମହିମାଙ୍କର ନଗର ପରିକ୍ରମା ପାଇଁ ବାହାରେ ସେବକ ଓ ପ୍ରଜାମାନେ ଅପେକ୍ଷା କରିଛନ୍ତି ।" "ମୁଁ ପ୍ରସ୍ତୁତ" କହି ରାଜା ପୋଷାକକୁ ପରୀକ୍ଷା କଲାପରି ଦର୍ପଣ ସମ୍ମୁଖରେ ଆଉ ଥରେ ଏପଟ ସେପଟ ବୁଲି ନିଜକୁ ଦେଖିଦେଲେ ଓ କହିଲେ, "ଭଲ ଫିଟ୍ କରୁଛି" । ରାଜାଙ୍କର ଗାଉନ ଧରିବା ସେବାକାରୀ ଦୁ'ଜଣ ନଇଁପଡ଼ି ଦୁଇପଟୁ କାଳ୍ପନିକ ଗାଉନକୁ ଟେକି ଧରିଲେ ।

ପ୍ରଧାନମନ୍ତ୍ରୀଙ୍କ ପଛରେ ଗୋଟିଏ ସୁସଜ୍ଜିତ ଶୋଭାଯାତ୍ରା ଆଗରେ ରାଜା ଚାଲିଥାଆନ୍ତି । ତାଙ୍କ ପଛେ ପଛେ ଲୋକଙ୍କ ବିରାଟ ପଟୁଆର । ରାସ୍ତା ଦୁଇକଡ଼େ ଜମିଥିବା ଲୋକେ ଆନନ୍ଦରେ କୁହାକୁହି ହେଉଥାନ୍ତି, "ନୂଆ ପୋଷାକ ପିନ୍ଧି ଆମ ମହିମା କି ସୁନ୍ଦର ଦିଶୁଛନ୍ତି । ସେବାକାରୀ ଦୁହେଁ ଧରିଥିବା ଗାଉନ କେଡ଼େ ଚମତ୍କାର ହୋଇଛି ।" ସେ କିଛି ଦେଖି ପାରୁନାହିଁ ବୋଲି ଦେଖର ଜଣା ନ ପଡ଼େ ସେଥିପାଇଁ ପ୍ରତ୍ୟେକ ଉଦ୍‌ଗ୍ରୀବ । ବୋକା ବା ଅଯୋଗ୍ୟ ବୋଲି ପ୍ରମାଣିତ ହେବାକୁ କିଏ ଇଚ୍ଛା କରେ ?

"ରଜା ତ ଲଙ୍ଗଳା !" ସେଇ ଭିଡ଼ ଭିତରୁ ଗୋଟିଏ ଛୋଟ ପିଲା ପାଟି କଲା । "ଏ ଟୁଆର କଥା ଶୁଣ" ତା ବାପ ପାଖ ଲୋକକୁ କହିଲା । ଅଳ୍ପ ସମୟ ମଧ୍ୟରେ ପିଲାଟାଏ କ'ଣ କହୁଛି ସେ କଥା କାନକୁ କାନ ହୋଇ ଲୋକଙ୍କ ଭିତରେ ପ୍ରଚାର ହୋଇଗଲା । ଗୋଟାଏ ଗୁଞ୍ଜରଣ ଶୁଭିଲା, "ରଜା ତ ଲଙ୍ଗଳା !" କେହି କେହି କହିଲେ, "ଲଙ୍ଗଳା ରାଜାଙ୍କୁ ଦେଖ ! କେମିତି ଅବାଗିଆ ଦିଶୁଛନ୍ତି ।"

ରାଜା ଚକିତ ହେଲେ । ଲୋକେ ତ ଠିକ୍ କହୁଛନ୍ତି ? ମାତ୍ର ମନେ ମନେ ଭାବିଲେ, "ଏ ପଟୁଆରରେ ମୁଁ ନିଶ୍ଚୟ ଯିବି । ସତରେ

ସୁନ୍ଦର ପୋଷାକଟିଏ ପିନ୍ଧିଥିଲେ ଯାହା ଯେପରି ହୋଇଥାନ୍ତା, ସବୁକଥା ସେହିପରି ଚାଲିବ ।”

ଭୃତ୍ୟମାନେ ଗାଉନ୍‌କୁ ତଥାପି ଯତ୍ନର ସହିତ ଟେକି ଧରିଥାନ୍ତି । ଯଦିଓ ସେମାନେ ଜାଣି ପାରିଥାନ୍ତି ଯେ ଗାଉନ୍ ନାହିଁ । ଅତି ମୂଲ୍ୟବାନ ପୋଷାକ ପିନ୍ଧିଥିବା ପରି ରାଜା ଚାଲିଥାନ୍ତି ।



# କୁହୁକବତୀ

ଯୁଦ୍ଧ ଫେରନ୍ତା ଜଣେ ସୈନିକ ରାସ୍ତାରେ ମାର୍ଚିଂ କରି ଯାଉଥାଏ । ପିଠିରେ ସୈନିକର ଝୁଲମୁଣି, କମରରେ ଖଣ୍ଡା ଝୁଲାଇ ସେ ଘଟମୁହାଁ ଚାଲିଥାଏ ।

ରାସ୍ତାରେ ଗୋଟାଏ ବୁଢ଼ୀ ଡାଆଣୀ ସହିତ ତା'ର ଭେଟ ହେଲା । ବଡ଼ କଦାକାର ଡାଆଣୀଟାଏ । ସୈନିକକୁ ଦେଖି ତାକୁ ଖୋସାମଦିଆ ସ୍ୱରରେ କହିଲା, "ଏ ପୋଷାକ ତମକୁ ଭଲ ସାଜୁଛି । କେଡ଼େ-ସୁନ୍ଦର ଖଣ୍ଡା, କି ବଢ଼ିଆ ଝୁଲମୁଣି ! ତମେ ତ ଜଣେ ବୀର ସୈନିକ ପରି ଦିଶୁଛ । ଯଦି ଚାହଁ ମୁଁ ତମକୁ ପ୍ରଚୁର ଟଙ୍କା ପାଇବାର ବାଟ ବତାଇଦେବ ।"

ଏହା କହି ବୁଢ଼ୀ ସୈନିକକୁ ଗୋଟିଏ ବଡ଼ ଗଛ ଦେଖାଇଦେଲା । ଗଛର ଗଣ୍ଡିଟା ପୋଲା । ଗଛ ଉପରକୁ ଚଢ଼ିଲେ ସୈନିକ ଗୋଟିଏ କୋରଡ଼ ଦେଖିବ । ସେଇ କୋରଡ଼ରେ ସେ ପଶିବ । ବୁଢ଼ୀ ତା ଅଣ୍ଟାରେ ଦଉଡ଼ି ବାନ୍ଧି ତଳେ ଧରିଥିବ । ଡାକଲେ କୋରଡ଼ ଭିତରୁ ଟାଣି ଆଣିବ ।

କିନ୍ତୁ ଗଛ କୋରଡ଼ରେ ସେ କାହିଁକି ପଶିବ ? ସେଠି କ'ଣ କରିବ ?

ବୁଢ଼ୀ ଚୁପ୍‌ଚୁପ୍ କହିଲା ଯେ ଗଛ ଭିତରୁ ସେ ମନ ଇଚ୍ଛା ଧନ ଆଣି ପାରିବ । କୋରଡ଼ରୁ ରାସ୍ତାଟିଏ ମାଟି ତଳେ ଥିବା ଗୋଟିଏ ଘର ପର୍ଯ୍ୟନ୍ତ ଯାଇଛି । ସେ ମାଟି ତଳ ଘର ଭିତରେ ଓ ବାହାରେ ଶହ ଶହ ବତୀ ସେ ଅଞ୍ଚଳକୁ ହାଲୋଳମୟ କରୁଛି । ସେଠି ପହଞ୍ଚିଲା ପରେ ସୈନିକ ତିନୋଟି କୋଠରୀ ଦେଖିବ । ପ୍ରଥମ ବଖରାରେ ଗୋଟିଏ ବଡ଼ ସିନ୍ଦୁକ ଅଛି ।

ସେ ସିନ୍ଦୁକ ଉପରେ ଗୋଟିଏ ଡାହାଳ କୁକୁର ବସିଛି । ତା ଆଖି ଦୁଇଟା ଥାଳିଆ ପରି । ବଡ଼ ଭୟଙ୍କର କୁକୁର ।



ସୈନିକ ହାତକୁ ଖଣ୍ଡେ ନୀଳ ଚଦର ବଢ଼େଇ ଦେଇ ବୁଢ଼ୀ କହିଲା, "ତାକୁ ଦେଖି ଡରିଯିବନି । ଏଇ ଚଦରକୁ ତଳେ ବିଛେଇ କୁକୁରକୁ ଚଦର ଉପରକୁ ଡାକି ଆଣିବ । ତାପରେ ସିନ୍ଦୁକ ଖୋଲି ତମେ ଯେତେ ଇଚ୍ଛା ତମ୍ବା ମୁଦ୍ରା ଆଣୁଛ ଆଣ ।"

"ତମର ଯଦି ରୂପା ଦରକାର ତେବେ ଦ୍ୱିତୀୟ ବଖରାକୁ ଯିବ । ସେଠି ଯେଉଁ କୁକୁର ଜଗିଛି ତା'ର ଆଖି ଥାଳ ପରି । ଭୟର କାରଣ ନାହିଁ । ତାକୁ ଗୁଦର ଉପରକୁ ଡାକ ଦବ । ତା ପରେ ସିନ୍ଦୁକରୁ ମନ ଇଚ୍ଛା ରୂପା ମୋହର କାଢ଼ିବ ।"

"ଯଦି ଚାହଁ, ସୁନା ବି ପାଇବ । ତୃତୀୟ ବଖରାରେ ସୁନା ଅଛି । ସୁନା ସିନ୍ଦୁକକୁ ଯେଉଁ କୁକୁର ଜଗିଛି ତା'ର ଆଖି ଦୁଇଟା ଚକ ପରି । ସେଇଟା ବାଘ ପରି ଭୟଙ୍କର । କିନ୍ତୁ ମୋଟେ ଡରିବ ନାହିଁ । ମାଳ ଗୁଦର ଉପରକୁ ଆସିଲା ପରେ ସେ ତମର କିଛି କରିବ ନାହିଁ ।"

"ମନ୍ଦ ପ୍ରସ୍ତାବ ନୁହେଁ" ବୁଢ଼ୀ କଥା ଶୁଣିସାରି ସୈନିକ ପାଟି ଖୋଲିଲା । "କିନ୍ତୁ ମତେ ତମକୁ କ'ଣ ଦେବାକୁ ପଡ଼ିବ ? ତମେ ନିଶ୍ଚୟ ବିନା ସ୍ୱାର୍ଥରେ ମୋତେ ଏ ବୁଦ୍ଧି ଦେଉନାହଁ ।"

"ମୁଁ ତମଠାରୁ ଫଟା ପାହୁଲଟିଏ ମଧ୍ୟ ନେବି ନାହିଁ । ମୋ ପାଇଁ ଗୋଟିଏ ଛୋଟ କାମ କରିବ । ସେ ଘରେ ମୋ ଆଈର ଗୋଟିଏ ପୁରୁଣା ଝକ୍‌ମକ୍ ପଥରର ବଣ୍ଣ ଅଛି । ସେଇଟିକୁ ଆଣି ମୋତେ ଦେବ ।"

"ହଉ" ସୈନିକ କହିଲା, "ମୋ ଅଣ୍ଟାରେ ତେବେ ଦଉଡ଼ି ବାନ୍ଧ ।"

ସୈନିକ ଅଣ୍ଟାରେ ଗୋଟିଏ ଶକ୍ତ ଦଉଡ଼ି ବାନ୍ଧିଦେଲା । ଡାଆଣୀ ହାତରୁ ମାଳ ଗୁଦରଟି ନେଇ ସେ ଗଛ ଉପରକୁ ଚଢ଼ିଲା । ସତକୁ ସତ ଗଛ ଗଣ୍ଡିରେ ଗୋଟାଏ କୋରଡ଼ । ସେ ତା ଭିତରେ ପଶିଲା ଓ ସୁଡ଼ଙ୍ଗ ପରି ରାସ୍ତାରେ ଯାଇ ଗୋଟିଏ ବଡ଼ ଘର ପାଖରେ ପହଞ୍ଚିଲା । ସେଠି ଶହ ଶହ ବତୀ ଜଳୁଛି । ଚତୁର୍ଦ୍ଦିଗ ଆଲୋକିତ । ସୈନିକ ପ୍ରଥମ ବଖରାର କବାଟ ଖୋଲିଲା । ବାପ୍‌ରେ ! ସିନ୍ଦୁକ ଉପରେ ବସିଥିବା ଯେଉଁ ଜନ୍ତୁ ତାକୁ ଚାହିଁଲା, ତା'ର ଆଖି ଥାଳିଆ ପରି ବଡ଼ । ଚଟାଣରେ ମାଳ ଗୁଦର ଚଞ୍ଚଳ ବିଛାଇ ଦେଇ ସୈନିକ କହିଲା, "ତୁ ତ ଭାରି ଭଲ ! ତଳକୁ ଓହ୍ଲାଇ ଆ ।" ଗୁଦର ଉପରକୁ ଡେଇଁପଡ଼ି କୁକୁର ଶାନ୍ତ ଭାବେ ଛିଡ଼ା ହେଲା ।

ସୈନିକ ସିନ୍ଦୁକ ଖୋଲି ବ୍ୟାଗ୍ ଓ ପକେଟ୍‌ରେ ତମ୍ବା ମୁଦ୍ରା ଭର୍ତ୍ତିକଲା । ସେଇଠୁ ଗଲା ଦ୍ୱିତୀୟ ବଖରାକୁ । ସେ ଘରେ ଯେଉଁ କୁକୁର ଦେଖିଲା ତା'ର ଆଖି ଥାଳି ପରି ବଡ଼ । "ତୁ ଆଉ ଏତେ ଏତେ ଆଖିରେ ଚାହୁଁନା" ସୈନିକ କହିଲା, "ତୋ ଆଖି ଏକାଥରକେ ପଦାକୁ ବାହାରି ଆସିପାରେ ।" ମାଲି ଚାଦରକୁ ଓହ୍ଲାଇଲା ପରେ କୁକୁର ଶାନ୍ତ । ସିନ୍ଦୁକ ରୁପାରେ ପୂର୍ଣ୍ଣ ହୋଇଛି ଦେଖି ଯେ ଯେତେ ତମ୍ବା ଆଣିଥିଲା ସେଇଠି ଫୋପାଡ଼ି ଦେଲା । ବ୍ୟାଗ୍ ଓ ପକେଟ୍‌ରେ ରୁପା ଭର୍ତ୍ତି କରି ସେ ଚାଲିଲା ତୃତୀୟ ବଖରାକୁ ।

ଓଃ ! ବାପ ରେ କୁକୁରଟାଏ ସିନ୍ଦୁକକୁ ଜଗିଛି । ସୈନିକକୁ ସେ ହିଂସ୍ର ଭାବେ ଚାହିଁଲା । ଦୁଇଟି ଆଖି ତ ନୁହେଁ, ସତେକି ଦୁଇଟା ଚକ । "ନମସ୍କାର" ମୁଣ୍ଡ ନୁଆଁଇ ସୈନିକ କୁକୁରକୁ ସମ୍ମାନ ଜଣାଇଲା । କାରଣ ସେପରି କୁକୁର ସେ ତା ଜୀବନରେ ଦେଖି ନ ଥିଲା । କୁକୁରକୁ ଆଉ ଥରେ ଅନାଇଲା ପରେ ସୈନିକ ପିଣ୍ଡରେ ପ୍ରାଣ ପଶିଲା । ମନେହେଲା କୁକୁରଟା ତା ବ୍ୟବହାରରେ ସନ୍ତୁଷ୍ଟ ହୋଇଛି । ତାକୁ ଡାକିବାରୁ ସେ ଚାଦର ଉପରକୁ ଡେଇଁ ପଡ଼ିଲା ।

ସିନ୍ଦୁକ ଖୋଲି ଦେଲାରୁ ସୈନିକର ଆଖି ଝଲସିଗଲା । କେତେକ ସୁନା ସାରା ସହରଟାକୁ କିଣି ନେଇ ହେବ । ରୁପାତକ କାଢ଼ି ପକେଇ ସେ ବ୍ୟାଗ, ପକେଟ, ଟୋପି, ଯୋତା—ଯେଉଁଠି ପାରିଲେ ସୁନା ଭର୍ତ୍ତି-କଲା । ସିନ୍ଦୁକ ଉପରକୁ କୁକୁରକୁ ଉଠେଇ ଦେଇ ସୈନିକ ଘର ବନ୍ଦ କଲା । ବର୍ତ୍ତମାନ ସେ ପ୍ରକୃତରେ ଧନୀ । ଗଛ କୋରଡ଼କୁ ଫେରିଯାଇ ପାଟି କଲା, "ଏଥର ମୋତେ ଉଠା ।"

"ଝକ୍‌ମକ୍ ବଣ୍ଟା ଆଣିଛ ତ ?" ଡାଆଣୀର ସ୍ୱର ଶୁଭିଲା ।

"ଭୁଲି ଯାଇଥିଲି । ବର୍ତ୍ତମାନ ନେଇ ଆସୁଛି" କହି ସୈନିକ ଫେରିଗଲା ଓ ଝକ୍‌ମକ ବଣ୍ଟାଟି ଧରିଆସିଲା । ଡାଆଣୀ ଦଉଡ଼ି ଟାଣି ତାକୁ କୋରଡ଼ ବାହାରକୁ ଆଣିଲା । ଗଛରୁ ଓହ୍ଲାଇ ସୈନିକ ସୁସ୍ଥ ହେଲା ।

ଏ ପୁରୁଣା ବଣ୍ଠାକୁ ନେଇ ତୁ କ'ଣ କରିବୁ ?" ସୈନିକ ପଚାରିଲା ।

ବୁଢ଼ୀ ଚଡ଼ା ଗଳାରେ କହିଲା, "ସେଥିରେ ତୁମର କ'ଣ ଅଛି ? ମତେ ସେଇଟିକୁ ଦିଅ ।

"କ'ଣ କହିଲୁ ? ସୈନିକ ଗର୍ଜି ଉଠିଲା । ଏ ବଣ୍ଠାକୁ ନେଇ କ'ଣ କରିବୁ ଶୀଘ୍ର କହ । ନଚେତ୍ ଦେଖୁଛୁ ଏ ଖଣ୍ଡା ।"

"ମୁଁ କହିବ ନାହିଁ ।"

ଖଣ୍ଡାରେ ସୈନିକ ଡାଆଣୀକୁ ଚୋଟେ ପକାଇଲା । ଡାଆଣୀ ମରି ପଡ଼ିଲା । ସେଇଠୁ ସେ କ'ଣ କଲା ନା ସବୁତକ ସୁନା ଥଳିଗୁଡ଼ାକରେ ବାନ୍ଧି କାନ୍ଧରେ ପକାଇଲା । ଝକ୍‌ମକ୍ ବଣ୍ଠା ପକେଟରେ ପୂରାଇ ସହରକୁ ଚାଲିଲା ।

ଭଲ ସୁନ୍ଦର ସହରଟିଏ । ସୈନିକ ଗୋଟିଏ ବଡ଼ ହୋଟେଲରେ ପହଞ୍ଚି ସବୁଠାରୁ ଦାମି କୋଠରୀଟି ନେଲା । ଟଙ୍କା ପାଇଁ ତା'ର ଆଉ ପରବାୟ କ'ଣ ? ଚାକରବାକର ଅବଶ୍ୟ ତା'ର ମଇଳା ପୋଷାକ ଦେଖି ଧନ୍ଦାରେ ପଡ଼ିଗଲେ । କିନ୍ତୁ ପରଦିନ ସକାଳୁ ସେ ବଢ଼ିଆ ପୋଷାକ ଓ ନୂଆ ଯୋତା କିଣି ଆଣିଲା । ସେ ଆଉ ସାଧାରଣ ସୈନିକଟିଏ ହୋଇ ରହିଲା ନାହିଁ । ଲୋକେ ଧରିନେଲେ ଯେ ସେ ଜଣେ ଉଚ୍ଚବଂଶର ଅମୀର । ତା ସହିତ ପଦେ କଥାବାର୍ତ୍ତା କରିବାକୁ ସେମାନେ ସୌଭାଗ୍ୟ ବୋଲି ମନେକଲେ । ସହର ସମ୍ବନ୍ଧରେ ଅନେକ କଥା ସୈନିକ ଜାଣିବାକୁ ପାଇଲା । ସୁନ୍ଦରୀ ରାଜଜେମାଙ୍କ କଥା ମଧ୍ୟ ତା କାନରେ ପଡ଼ିଲା ।

ରାଜକୁମାରୀଙ୍କୁ ଥରେ ଦେଖିବା ପାଇଁ ସୈନିକର ଇଚ୍ଛା ହେଲା । ମାତ୍ର ଯାହା ବୁଝିଲା, ଦେଖାହେବା ବଡ଼ ମୁସ୍କିଲ । ରାଜକୁମାରୀ ଗୋଟିଏ ସୁରକ୍ଷିତ ଦୁର୍ଗରେ ରହନ୍ତି । ସେ ଦୁର୍ଗର ଗଡ଼ଖାଇ ଓ ମେଘନାଦ ପାଚେରି ଟପି ତା ଭିତରକୁ ପଶିବା ଅସମ୍ଭବ । ଦୁର୍ଗ ଭିତରକୁ ପଶିବା ଏକାବେଳେ ନିଷେଧ । କାରଣ ଭବିଷ୍ୟବାଣୀ ଅଛି ଯେ ରାଜଜେମା ଗୋଟାଏ ସାଧାରଣ ସୈନିକକୁ ବିବାହ କରିବେ ।

ରାଜକୁମାରୀଙ୍କୁ ଦେଖିବାକୁ ସୈନିକର ମନ ବ୍ୟାକୁଳ ହେଲା । କିନ୍ତୁ ତାଙ୍କୁ ବା କାହିଁକି ଅନୁମତି ମିଳିବ ? ସେ କଥା ଅସମ୍ଭବ । ତଥାପି ତାଙ୍କ ଭାବନା ସୈନିକ ମନରୁ ଯାଉ ନ ଥାଏ ।

ସାଙ୍ଗମେଳରେ ଆଡ଼ମ୍ବରରେ ଚଳି ସୈନିକର ଟଙ୍କା ପାଣି ପରି ଖର୍ଚ୍ଚ ହେଉଥାଏ । ସେ ପୁଣି ବଡ଼ ଦାନୀ । ଗରିବଙ୍କୁ ହାତ ଖୋଲି ସାହାଯ୍ୟ କରେ । ଦିନେ ଦେଖିଲା, ତା ପାଖରେ ଆଉ ପଇସା ନାହିଁ । ଧନ ଥିଲାବେଳେ ସେ ମୂଲ୍ୟବାନ ପୋଷାକ ପିନ୍ଧୁଥିଲା । ସାଙ୍ଗମେଳରେ ମଜଲିସ କରୁଥିଲା । ଯେଉଁ ବନ୍ଧୁମାନେ ଆସୁଥିଲେ ସମସ୍ତେ ତାକୁ ପ୍ରଶଂସା କରୁଥିଲେ । ସେ ସବୁ ଶୁଣିବାକୁ ସୈନିକକୁ ବଡ଼ ସୁଖ ଲାଗୁଥିଲା । କିନ୍ତୁ ଧନ ସରିବାରୁ ବନ୍ଧୁମାନେ ଆଉ ଧରାଛୁଆଁ ଦେଲେ ନାହିଁ । ସେ ମଧ୍ୟ ବାଧ୍ୟ ହୋଇ ହୋଟେଲ୍‌ର ଗୋଟିଏ ଭଙ୍ଗା, ପରିତ୍ୟକ୍ତ କୋଠରୀକୁ ଉଠିଗଲା । ସେଇଠି ବଡ଼ ଅଭାବରେ ଚଳୁଥାଏ ।

ଦିନେ ସନ୍ଧ୍ୟାବେଳେ ଗୋଟିଏ ମହମବତୀ କିଣିବାକୁ ମଧ୍ୟ ସୈନିକ ପାଖରେ ପଇସା ନ ଥାଏ । ଅନ୍ଧାରରେ ତା'ର ଝକ୍‌ମକ୍‌ ବତୀ କଥା ମନେ ପଡ଼ିଗଲା । ସାମାନ୍ୟ ବତୀଟା ପାଇଁ ବୁଢ଼ୀର ପ୍ରାଣ ଯାଇଥିଲା । ଯାହାହେଉ, ରାତିରେ ସେଇଟା କାମ ଦବ । ଏହା ଭାବି ସୈନିକ ଝକ୍‌ମକ୍‌ ବତୀକୁ ତଳେ ଘଷିଦେଲା । ବତୀ ଜଳିବା ମାତ୍ରେ କବାଟ ଖୋଲି ଗୋଟିଏ କୁକୁର ପଶି ଆସିଲା ।

"କ'ଣ ଦରକାର ଆଦେଶ କରନ୍ତୁ," କୁକୁର କହିଲା ।

ସୈନିକ ଆଶ୍ଚର୍ଯ୍ୟ ହୋଇଗଲା । "ଏ କ'ଣ !" ସେ ମନେ ମନେ ଭାବିଲା, "ଯଦି ମୁଁ ଯାହା ଚାହିଁବି ତା ମିଳିଯିବ ତେବେ ଏ ବତୀର ବଡ଼ ମହିମା । ମନକଥା ମନରେ ରଖିକହିଲା, "ମତେ କିଛି ଟଙ୍କା ଆଣି ଦେ । ସେଇକ୍ଷଣି କୁକୁର ଉଭେଇ ଗଲା, ମୁହୂର୍ତ୍ତକରେ ଥଳିଏ ତମ୍ବାମୁଦ୍ରା ପାଟିରେ ଧରି ପହଞ୍ଚିଲା ।

ଏଥର ସୈନିକ ବତୀଟିର ମାହାତ୍ମ୍ୟ ବୁଝିଲା । ତାକୁ ଥରେ ଘଷିଲେ ଥାଳିଆ ପରି ଆଖି ଥିବା କୁକୁର ବାହାରେ । ଦୁଇଥର ଘଷିଲେ

ରୂପା ସିନ୍ଦୁକ ଉପରେ ଯାହା ଦେଖିଥିଲା ସେ ହାଜର ହୁଏ । ତିନି ଥରରେ ସୁନା ସିନ୍ଦୁକର ଜଗୁଆଳ କୁକୁର ପହଞ୍ଚେ ।

ସୈନିକ ହୋଟେଲରେ ତା'ର ପୂର୍ବ ଘରକୁ ଫେରିଗଲା । ଆଗ ପରି ଆଡ଼ମ୍ବରରେ ଚଳିଲା । ଟଙ୍କା ଥିଲେ କେଉଁ ଜିନିଷର ଅଭାବ ? ଦୁଃଖ ଘୁଞ୍ଚିବାରୁ ତା'ର ପୁଣି ରାଜକୁମାରୀଙ୍କ କଥା ମନେ ପଡ଼ିଲା । ସମସ୍ତେ କହୁଛନ୍ତି ରାଜକୁମାରୀ ଅପୂର୍ବ ସୁନ୍ଦରୀ ! କିନ୍ତୁ ଦୁର୍ଗ ଭିତରେ ବନ୍ଦୀ ହୋଇ ରହିଲେ ଲାଭ କ'ଣ ? ଏହିପରି ଭାବନା ସୈନିକ ମନରେ ଆସିଲା । କିପରି ହେଲେ ତାଙ୍କୁ ଦେଖିବାକୁ ସେ ଛଟପଟ ହେଲା ।

"ଆସ୍ତୁ ପରୀକ୍ଷା କରାଯାଉ", ଭାବି ସୈନିକ କହ୍ମୁକବତୀ ଘଷି ଦେବାରୁ କୁକୁର ଆସି ସାମନାରେ ଛିଡ଼ାହେଲା । "ବର୍ତ୍ତମାନ ଅଧ ରାତି", ସୈନିକ କହିଲା, "ତଥାପି ରାଜକୁମାରୀଙ୍କୁ ମୁହୂର୍ତ୍ତକ ପାଇଁ ଦେଖିବାକୁ ମୋର ଖୁବ୍ ଇଚ୍ଛା ହେଉଛି ।"



ମାଲିକ ପାଖରୁ କଥା ସରିବା ମାତ୍ରେ କୁକୁର ଅନ୍ତର୍ଦ୍ଧାନ ହୋଇଗଲା । ମିନିଟିଏ ସମୟ ଯାଇଛି କି ନାହିଁ, ରାଜକୁମାରୀଙ୍କୁ ପିଠିରେ ଶୁଆଇ

ଆସି ହାଜର । ସେ କୁକୁର ପିଠିରେ ନିଦରେ ଶୋଇଥାନ୍ତି । ସୈନିକ ତାଙ୍କୁ ଦେଖି ଭାବିଲା, ସୁନ୍ଦରପଣରେ କେଉଁ ଅପ୍‌ସରା ବା ପରୀଙ୍କ ସହିତ ସମାନ ହେବ ? ସେ ରାଜକୁମାରୀଙ୍କ କପାଳକୁ ଧୀରେ ଆଉଁସି ଦେଲା । କୁକୁର ରାଜକୁମାରୀଙ୍କୁ ଧରି ଚାଲିଗଲା ।

ସକାଳୁ ରାଜକୁମାରୀ ରଜା ଓ ରାଣୀଙ୍କୁ କହିଲେ ଯେ ରାତିରେ ସେ ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଛନ୍ତି । କୁକୁର ପିଠିରେ ଶୋଇ ସୈନିକ ପାଖକୁ ଯିବା ଏବଂ ସୈନିକ ତାଙ୍କୁ ଆଉଁସି ଦେବା ଘଟଣାଟି ତାଙ୍କୁ ସ୍ୱପ୍ନ ପରି ଲାଗିଲା । ସବୁ ଶୁଣି ରାଣୀ କହିଲେ, "ଭଲ ମଜା ସ୍ୱପ୍ନଟିଏ" । କିନ୍ତୁ ତାଙ୍କ ମନକୁ ପାପ ଛୁଇଁଲା । ଭବିଷ୍ୟବାଣୀ କଥା ତାଙ୍କର ମନେ ପଡ଼ିଗଲା । ସେଦିନ ରାତିରେ ରାଜକୁମାରୀଙ୍କୁ ଜଗି ପାଖରେ ଗୋଟିଏ ବୁଢ଼ୀ ଶୋଇଲା ।

ରାଜକୁମାରୀଙ୍କୁ ଆଉ ଥରେ ଦେଖିବାକୁ ସୈନିକର ଭାରି ଇଚ୍ଛା ହେଲା । ତେଣୁ ପରଦିନ ରାତିରେ ସେ ପୁଣି କୁକୁରକୁ ଡାକି ତାଙ୍କୁ ଆଣିବାକୁ ଆଦେଶ ଦେଲା । ବୁଢ଼ୀ ତ ଚଉକିଥାଏ । ଧଡ଼ପଡ଼ ହୋଇ କୁକୁର ପଛରେ ଧାଇଁଲା । ଦେଖିଲା, ଜେମାଙ୍କୁ ଧରି ଗୋଟିଏ ବଡ଼ କୋଠା ଭିତରକୁ କୁକୁର ପଶିଗଲା । କ'ଣ କରିବ ବୁଢ଼ୀକୁ ବୁଦ୍ଧି ଦିଶିଲା ନାହିଁ । ଭାବିଲା ଚିହ୍ନଟ କରିଗଲେ ସକାଳୁ ସହଜରେ ଖୋଜି ବାହାର କରିହେବ । ସେଇଠୁ ଗୋଟିଏ ଖଡ଼ି ଆଣି କବାଟରେ ଛକି ଚିହ୍ନ କରିଦେଲା । ଛକି ଚିହ୍ନଟି କିନ୍ତୁ କୁକୁର ଆଖିରେ ପଡ଼ିଗଲା । ସେ କ'ଣ କଲା ନା ସହର-ଯାକର ସବୁ ଘର କବାଟରେ ଛକି ମାରିଦେଲା ।

ସକାଳୁ ରାଜା ଓ ରାଣୀ ସଦଳବଳେ ବୁଢ଼ୀକି ଧରି ଘର ଖୋଜିବାକୁ ବାହାରିଲେ । 'ଏଇ ଘରଟା' ଗୋଟାଏ ଘର ଆଡ଼କୁ ଆଙ୍ଗୁଠି ଦେଖାଇ ରାଜାଙ୍କୁ ଚିହ୍ନାଇ ଦେଲେ । ସମସ୍ତେ ସେ ଆଡ଼କୁ ଅନାଇଲା ବେଳକୁ ଜଣେ କିଏ ପାଟି କଲା, "ହେଇ ଦେଖ ! ଏ ଘର କବାଟରେ ମଧ୍ୟ ଛକି ଚିହ୍ନ ଅଛି ।" ଏମିତି ଦେଖୁ ଦେଖୁ ଜଣାଗଲା ଛକି-ଚିହ୍ନ ନ ଥିବା ଘର ନାହିଁ । ଆଉ ବୃଥା ଚେଷ୍ଟା ନ କରି ସମସ୍ତେ ଫେରିଲେ ।

ରାଣୀ କିନ୍ତୁ ସହଜେ ହାରିଯିବା ଲୋକ ନୁହନ୍ତି । ସେ ଖୁବ୍ ବୁଦ୍ଧିମତୀ । ସମସ୍ତେ ଘର ଖୋଜୁଥିବାବେଳେ ଢୋଡ଼ାଚାଡ଼ ଭିତରେ ସେ ଗୋଟାଏ କାମରେ ଲାଗିଥାନ୍ତି । ସୁନା କଇଁଚିରେ ଖଣ୍ଡେ ସିଲ୍‌କ କନାକୁ କାଟି ସେ ଗୋଟିଏ ଛୋଟ ବ୍ୟାଗ ତିଆରି କଲେ । ବ୍ୟାଗ ଭିତରେ ସୋରିଷ ଭରାଇ ତା ମୁହଁ ସିଲାଇ କରି ରଖିଲେ । ଝିଅ ଶୋଇଲା ବେଳେ ତା ହାତରେ ବ୍ୟାଗଟି ବାନ୍ଧି ବ୍ୟାଗରେ ଗୋଟିଏ ଛୋଟ କଣା କରିଦେଲେ ।

ତୃତୀୟ ଥର ରାତିରେ ମଧ୍ୟ କୁକୁର ଆସିଲା ଓ ଜେମାଙ୍କୁ ପିଠିରେ ଧରି ଚାଲିଲା । ବାଟଯାକ ସୋରିଷ ବୁଣି ହୋଇ ଯାଉଛି ସେଥିପ୍ରତି ତା'ର ଲକ୍ଷ୍ୟ ନାହିଁ । ଜେମା ରାତିରେ କୁଆଡ଼େ ଯାଉଛନ୍ତି ସେ କଥା ସକାଳେ ଧରାପଡ଼ିଗଲା । ସୋରିଷ ସୈନିକ ପର୍ଯ୍ୟନ୍ତ ବାଟ କଢ଼ାଇ ନେଲା । ରାଜାଙ୍କ ଲୋକେ ସୈନିକକୁ ବନ୍ଦୀ କରି ଜେଲ୍‌ରେ ପୂରାଇଦେଲେ ।

ଜେଲ୍ ଭିତରେ କାହାକୁ ଭଲ ଲାଗେ ? ସୈନିକର ବ୍ୟସ୍ତତା ଦେଖି ଜେଲ୍ ସିପାହିମାନେ ହସିଲେ । ଥଟ୍ଟା କରି କହିଲେ, "ତତେ ବେଶୀ ସମୟ ଜେଲ୍‌ରେ ରହିବାକୁ ପଡ଼ିବ ନାହିଁ । କାଲି ସକାଳେ ଫାଶୀ ପାଇବୁ ।"

ସୈନିକର ବୁଦ୍ଧି ହଜିଗଲା । ବର୍ତ୍ତମାନ ଉପାୟ କ'ଣ ? କୁହୁକବତୀ ମଧ୍ୟ ତା ପାଖରେ ନାହିଁ । ଚାରିଆଡ଼କୁ ଚାହିଁଥିବା ବେଳେ ଦେଖିଲା ତା'ର ଜୋତା ପୋଛା ପିଲାଟି ଯାଉଛି । ସୈନିକ ତାକୁ ଝରକା ପାଖକୁ ଡାକି କହିଲା, "ଯା, ହୋଟେଲରେ ମୋ କୋଠରୀରୁ ଝକ୍‌ମକ୍ ବତୀ ନେଇ ଆସିବୁ । ଏ କାମ ପାଇଁ ତତେ ଟଙ୍କାଏ ପୁରସ୍କାର ଦେବି ।"

ଟଙ୍କାଟାଏ କୋଉଠୁ ମିଳେ ? ଅଳ୍ପ ସମୟରେ ସେ ଝକ୍‌ମକ ବତୀ ଧରି ହାଜର ହେଲା ।

ସହର ବାହାରେ ଶୂଳୀ ସଜଡ଼ା ହୋଇ ରହିଥାଏ । ବଦମାସ୍ କିଏ ମରୁଛି ଦେଖିବା ପାଇଁ ହେ ହେ ଲୋକ ଜୁଟି ହୋଇଥାଆନ୍ତି ।

ଦ୍ୱାରଆଡ଼େ ସଶସ୍ତ୍ର ପ୍ରହରୀ । ରାଜା ଓ ରାଣୀ ସିଂହାସନରେ ବସିଥାନ୍ତି । ସେମାନଙ୍କ ସାମନାରେ ବିଚାରକବୃନ୍ଦ ।



ସୈନିକ ଫାଶୀ ମଞ୍ଚକୁ ଉଠିଲା । ତା ବେକ ପାଖରେ ଫାଶ ଝୁଲୁଛି । ମରିବା ପୂର୍ବରୁ ତା'ର ଟିକିଏ ଧୂଆଁ ପିଇବାକୁ ଇଚ୍ଛା ହେଉଛି ବୋଲି ସେ ଜଣାଇଲା । ରାଜା ଅନୁମତି ଦେଲାରୁ ସୈନିକ ଚୁହୁକବତୀକୁ ଘଷିଲା—ଥରେ ! ଦି ଥର !! ତିନିଥର !!!

ବାଢ଼ ପରେ ତିନିଟା କୁକୁର ଆସି ସୈନିକ ପାଖରେ ଛିଡ଼ା ହୋଇ-ଗଲେ । ସେମାନଙ୍କୁ ସେ କହିଲା, ମୁଁ ଯେପରି ଫାଶୀ ନ ପାଏ ତା'ର ବ୍ୟବସ୍ଥା କର ।"

କୁକୁର ତିନିଟା ବିଚାରକମାନଙ୍କ ଆଡ଼କୁ ଖେଦିଗଲେ । ସେଇ ଭୟଙ୍କର ପ୍ରାଣୀଙ୍କୁ ଦେଖି ସେମାନେ ବଡ଼ ପାଟିରେ କହିଲେ, "ହେ ମହାନ୍ ସୈନିକ ! ଆପଣ ଜେମାଙ୍କୁ ବିବାହ କରନ୍ତୁ ଓ ଆମର ରାଜା ହୁଅନ୍ତୁ ।"



# ସାହସୀ ଟିଣ ସୈନିକ

ଏକଦା ପଚିଶ ଜଣ ଟିଣ ସୈନିକ ଥିଲେ । ସେମାନେ ସମସ୍ତେ ଭାଇ ଭାଇ । କାରଣ ଗୋଟିଏ ଟିଣ ଗୁମଚରୁ ସେମାନେ ଗଢ଼ା ହୋଇ-ଥିଲେ । ସମସ୍ତେ ଲାଲ ଓ ନୀଳ ରଙ୍ଗର ଅତି ସୁନ୍ଦର ସୈନିକ ପୋଷାକ ପିନ୍ଧିଥାଆନ୍ତି । ହାତରେ ବନ୍ଧୁକ ଶୋଭା ପାଉଥାଏ । ବୀର ସୈନିକ ପରିରେ ସେମାନେ ସାମନାକୁ ଚାହିଁ ଛିଡ଼ା ହୋଇଥାନ୍ତି । ସର୍ବପ୍ରଥମେ



ଯେଉଁ କଥା ଏହି ବୀର ଜବାନ୍‌ଙ୍କ କାନରେ ପଡ଼ିଥିଲା ତା ହେଉଛି, 'ଟିଣ ସୈନିକ !' ଗୋଟିଏ ପିଲାଟିଏ ଭୁଣ୍ଡରୁ ବାହାରିଥିଲା ଏଇ ପଦଟି । ସେମାନେ ଯେଉଁ ବାକ୍‌ସ ଭିତରେ ଥିଲେ, ତାହାର ମୁହଁ ଖୋଲିଦେବା ମାତ୍ରେ ପିଲାଟିଏ ଆନନ୍ଦରେ ତାଳି ମାରି କହି ଉଠିଲା, "ଟିଣ ସୈନିକ ।"

ଗୋଟିକୁ ଛାଡ଼ି ଦେଲେ ବାକି ଚବିଶ ଜଣ ସୈନିକ ଅବିକଳ ସମାନ । ଯେଉଁ ଗୋଟିକ ଅଲଗା ତା'ର ଗୋଟିଏ ଗୋଡ଼ ।

ନ ହେଲେ ଆଉ ସବୁ ସମାନ । ସେ ଏକଗୋଡ଼ିଆ ହେବାର କାରଣ ସବା ଶେଷରେ ତା'ର ସୃଷ୍ଟି । ତା ବେଳକୁ ଟିଣ ଅଣ୍ଟିଲା ନାହିଁ । ଗୋଟିଏ ଗୋଡ଼ରେ ଦୃଢ଼ ଭାବରେ ଛିଡ଼ା ହୋଇ ପାରିବା ଭଳି ସେ ଗଢ଼ାହେଲା ।



ଟେବୁଲ୍ ଉପରେ ଆଉ ଅନେକ କଣ୍ଢେଇ ଓ ଖେଳଣା ଥୁଆ ହୋଇଥାଏ । ସେ ସମସ୍ତଙ୍କ ଭିତରେ ଗୋଟିଏ ନର୍ତ୍ତକୀ କଣ୍ଢେଇ ବାରି ହୋଇଯାଏ । ସାନ କଣ୍ଢେଇଟିଏ ହେଲେ କି ସୁନ୍ଦର ! ଦୁଇ ହାତ ମେଲାଇ ଓ ଗୋଟିଏ ଗୋଡ଼ ଉପରକୁ ଟେକ ଦେଇ ଅପୂର୍ବ ନାଚିଲା ଠାଣିରେ ସେ ଛିଡ଼ା ହୋଇଥାଏ । ତା ଗୋଡ଼ଟି ଏତେ ଉଚ୍ଚକୁ ଉଠିଥାଏ ଯେ ଟିଣ ସୈନିକ ମନେ ଭାବେ ନର୍ତ୍ତକୀ ତା'ରି ପରି ଏକ ଗୋଡ଼ିଆ । ତେଣୁ ନର୍ତ୍ତକୀକୁ ନିଜର ସ୍ତ୍ରୀ ଭାବ ସେ ବିଭୋର ହୁଏ । ଫୁଲଦାନୀ ଉହାଡ଼ରେ ରହି ଟିଣ ସୈନିକ ନର୍ତ୍ତକୀକୁ କଣେଇ କଣେଇ ଚାହେଁ ।

ରାତିରେ ଘର ଲୋକମାନେ ଶୋଇବା ପରେ କଣ୍ଢେଇଙ୍କର ଖେଳ ଆରମ୍ଭ ହୋଇଯାଏ । ସେମାନେ ମନ ଖୁସିରେ ବୁଲନ୍ତି, ସାଙ୍ଗ ହୋଇ ଖେଳନ୍ତି, ମିଛିମିଛିକା ଲଢ଼େଇରେ ମାତନ୍ତି । କେବଳ ନର୍ତ୍ତକୀ ଓ ଟିଣ ସୈନିକ ସେମାନଙ୍କ ସ୍ଥାନରେ ସ୍ଥିର ଥାଆନ୍ତି ।

ଥରେ ରାତିରେ ଗୋଟାଏ ଘଟଣା ଘଟିଲା । ଘଣ୍ଟାରେ ଟଂ ଟଂ ହୋଇ ବାର ବାଜିବା ମାତ୍ରେ କିଏ ଗୋଟାଏ ଫୁଲଦାନୀ ଭିତରୁ ଡେଇଁକୁ

ତେଇଁ ପଡ଼ିଲା । ସେଇଟା ଗୋଟାଏ ଅପରଚ୍ଛନ୍ନିଆ ଶ୍ରେଷ୍ଠ ପିଶାଚ । ଟିଣ ସୈନିକକୁ କଟମଟ କରି ଅନେଇ କହିଲା, "ଯିଏ ତୋର ନୁହଁ ତାକୁ ପାଇବାକୁ ମନ ବଳାନା ।"



ସକାଳେ ପିଲମାନେ ଟିଣ ସୈନିକକୁ ନେଇ ଝରକା ଉପରେ ରଖିଦେଲେ । ପିଶାଚ କାରସାଦ୍ଦ କଲା କି କ'ଣ କେଜାଣି, ହଠାତ୍ ଗୋଟାଏ ବତାସ ପଶିଆସି ଝରକାଟାକୁ ଘଡ଼୍ କରି ଖୋଲିଦେଲା ଓ ଟିଣ ସୈନିକ ତଳକୁ ଖସିପଡ଼ିଲା । ତଳକୁ ମାନେ ଏକାଥରକେ ତିନ-ତାଲାରୁ ତଳ ରାସ୍ତାକୁ । ସାଙ୍ଘାତିକ ବ୍ୟାପାର । ଟିଣ ସୈନିକର ଗୋଡ଼ ଉପରକୁ ମୁଣ୍ଡ ତଳକୁ । ପୁରା ଓଲଟି ଯାଇ ସେ ଖସୁଥାଏ । ତା'ର ଶିରସ୍ତ୍ରାଣ ଓ ବାୟୋନେଟ୍ କାଛରେ ବାଡ଼େଇ ହେଉଥିବା ଫଳରେ ଟିଣ ସୈନିକର ଅବସ୍ଥା ଖରାପ । ବିଚରାର କ'ଣ ହେଲା ଦେଖିବାକୁ ଗୃହକର୍ତ୍ତ୍ରୀ ଓ ପିଲାଏ ସିଡ଼ି ବାଟେ ତଳକୁ ଧାଇଁଲେ । କିନ୍ତୁ ଖୋଜ ଖୋଜ କେହି ପାଇଲେ ନାହିଁ । ସେମାନେ ଥରେ ତାକୁ କୁଦ୍ ପକାଇ ଥାଆନ୍ତେ, ତଥାପି କାହା ଦୃଷ୍ଟି ତା' ଉପରେ ପଡ଼ିଲା ନାହିଁ ।

ପିଲମାନେ ଯାହା ବା ତାକୁ ଆତୁର ଖୋଜଥାଆନ୍ତେ, ବର୍ଷା ମାଡ଼ ଆସିଲା । ଅସରଏ ବଡ଼ ବର୍ଷା ହୋଇଯିବା ପରେ ଦୁଇଜଣ ବାଳକ ସେବାଟେ ଯାଉଥାନ୍ତି । ତା ଉପରେ ଜଣକର ଆଖି ପଡ଼ିଯିବାରୁ ସେ ଉଲ୍ଲସିତ ହୋଇ ପାଟିକଲା, "ହେଇରେ ଗୋଟିଏ ଟିଣ ସୈନିକ ।"

ତା'ପରେ ସାଙ୍ଗଙ୍କୁ କହିଲା, "ଏବେ ପାଖରେ ତା'ର ତ ଡଙ୍ଗାଟିଏ ନହିଁ ତ ଦରକାର ।"

ସେମାନେ କାଗଜରେ ଗୋଟିଏ ଡଙ୍ଗା ତିଆରି କରି ଟିଣ ସୈନିକକୁ ସେଥିରେ ରଖିଦେଲେ । ତା'ପରେ ରାସ୍ତାକଡ଼ ନାଳରେ ଡଙ୍ଗାଟିକୁ ଭସାଇ ଦେଲେ । ଡଙ୍ଗା ଭାସି ଚାଲିଲା । ରାସ୍ତାରେ ପିଲା ଦୁଇଜଣ ତାଳି ମାରି ଦୌଡ଼ୁଥା'ନ୍ତି । ବାପ୍‌ରେ ! ନଳାରେ କେଡ଼େ କେଡ଼େ ଢେଉ ! ପୁଣି ସୁଅର କି ତୋଡ଼ ! ! ଟିଣ ସୈନିକ ଉଠିପଡ଼ି ହୋଇ ନାଚୁଥାଏ । ମୋଡ଼ ଉପରେ ଡଙ୍ଗା ବୁଲିଯିବାବେଳେ ସେ ଟଳ ଟଳ ହୋଇ ଯାଉ-ଥିଲା । ତଥାପି ଦୃଢ଼ ହୋଇଥାଏ ।

ଗୋଟାଏ ପୋଲ ପଡ଼ିଲା । ପୋଲ ତଳ କି ଅନ୍ଧାର ! ବାକ୍‌ସ ଭିତରର ଅନ୍ଧାର କଥା ଟିଣ ସୈନିକର ମନେ ପଡ଼ିଗଲା । "ମୁଁ କୁଆଡ଼େ ଯାଉଛି" । ଏହି କଥା ଟିଣ ସୈନିକ ଭାବୁଥାଏ । ହଠାତ୍ ଦେଖିଲା ଗୋଟାଏ ମୂଷା ତା ବାଟ ଓଗାଳିଛି । ପୋଲ୍‌ତଳ ନଳାରେ ମୂଷାର ଘର । "ତୋର ପାସ୍‌ପୋର୍ଟ ଅଛି ?" ମୂଷା ପଚାରିଲା, "ଚଞ୍ଚଳ ମୋତେ ଦେଖା ।" ଟିଣ ସୈନିକ କିଛି ନ କହି ଗମ୍ଭୀର ହୋଇ ଛିଡ଼ା ହୋଇଗଲା । ବନ୍ଧୁକଟାକୁ ଖାଲି ଝୁଙ୍କେଇଦେଲା । ବାସ୍, ଡଙ୍ଗା ପୁଣି ଆଗକୁ ମାଡ଼ି ଚାଲିଲା ।

ତେଣିକି ସୁଅ ଆହୁରି ପ୍ରଖର । ପୋଲ ସରିବା ପରେ ସୈନିକ ଦେଖିଲା, ଚତୁର୍ଦ୍ଦିଗ ଆଲୋକିତ । ତାକୁ ଘୁ ଘୁ ଗର୍ଜନ ଶୁଭିଲା । ନଳାଟି ଯାଇ ଗୋଟିଏ ବଡ଼ କେନାଲ୍‌ରେ ପଡ଼ିଛି । ଡଙ୍ଗା ବିଜୁଳି ବେଗରେ ଧାଇଁଥାଏ । ପଲକ ନ ପକାଇ ଦୃଢ଼ ଭାବେ ସେ ଛିଡ଼ା ହୋଇଥାଏ ।

କେନାଲ୍‌ରେ ପଡ଼ିବା ମାତ୍ରେ ଡଙ୍ଗାଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି-ଗଲା । ଟିଣ ସୈନିକକୁ ଗୋଟାଏ ବଡ଼ ମାଛ ଗିଳି ଦେଲା । ସେ ମାଛକୁ ଧରି କେଉଟ ବଜାରରେ ବିକିଲା । ଦୁଜୋଇ ମାଛଟିକୁ ହାଟରୁ କିଣି ଆଣିଲା । ରୋଷେଇଆ ମାଛ କାଟୁ କାଟୁ ପାଟି କଲା, ଆରେ ! ହେଇ ତ

ଆମର ଟିଣ ସୈନିକ !" ସେଇଠୁ ସେ ତାଙ୍କୁ ଭଲ ଭାବେ ଧୁଆଧୋଇ କରି ଟିଣ ସୈନିକ ଯେଉଁଠି ଥିଲା ସେଇଠି ନେଇ ରଖିଦେଲା ।

ସୁନ୍ଦରୀ ନର୍ତ୍ତକୀ ଅବିକଳ ପୂର୍ବ ଭଳି ଛିଡ଼ା ହୋଇଥାଏ । ଗୋଟିଏ ପାଦର ବୁଢ଼ା ଆଙ୍ଗୁଳି ଟିପରେ ଭର ଦେଇ, ଦୁଇ ହାତ ମେଲେଇ ସତେକି ଉଡିଯିବାର ମନମୋହିନୀ ଠାଣିରେ । ଘର ଗୁଡ଼ିକ ଆଗରୁ ଟିଣ ସୈନିକ ଯାହାକୁ ଯେଉଁଠି ଦେଖିଥିଲା, ସେ ସେହି ସ୍ଥାନରେ ରହିଥାଏ ପୂର୍ବପରି ।

